# ଗୀତିମାଳା

ଲେଖକ

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

ଓ

ପଣ୍ଡିତ ରଘୁନାଥ ମିଶ୍ର

ପ୍ରଥମ ପ୍ରକାଶ

୧୯୬୧

ପ୍ରକାଶକ

ଆଲୋକ-ସାହିତ୍ୟ-ପ୍ରତିଷ୍ଠାନ

-କଟକ-

ମୂଲ୍ୟ—ଏକ ଟଙ୍କା ପଚ୍ଚିଶ ନୂଆ ପଇସା

# ସୂଚୀ

| ବିଷୟ | | ପୃଷ୍ଠା |
|---|---|---|

| ବିଷୟ | | ପୃଷ୍ଠା |
|---|---|---|
|  |

---

# ନର-ନାରାୟଣ

ନିଦଭରେ ଗଣପତି ଶୋଇଥିଲେ ଯେବେ,
ନିଶୀଥ ସପନରୁ ଉଠି ବସିଲେ ଆପଣେ ।
ଦେଖନ୍ତି ପ୍ରକୋଷ୍ଠ ବିଧୁ ରଜତ ଉଜଳ,
ପୂର୍ଣ୍ଣ ପ୍ରସ୍ଫୁଟିତ ନବ କୁମୁଦରୁ ବଳି,
ତାଳପ ସମୀପେ ତାଙ୍କ ହୋଇଛନ୍ତି ଉଭା
କନକ ପୁସ୍ତକ କରେ ଋଷିଜନ ଶୋଭା ।
ବୁଲାନ୍ତି ଲେଖଣୀ ଧୀରେ ଉଦାସ ଅନ୍ତରେ,
କି ଲେଖନ୍ତି ସେ ପୁସ୍ତକେ ସେହି ଥରେ ଥରେ ।
ପ୍ରଶାନ୍ତ ମୂରତି ତାଙ୍କ ନିରେଖି ନୟନେ,
ପୁଚ୍ଛିଲେ ନିର୍ଭୟେ ଗଣପତି ଋଷିଙ୍କନେ—
"କି ଲେଖିଛ ?" ଋଷି ତହୁଁ ଟେକି ଧୀରେ ଶିର,
ସୁଧା ଢଳଢଳ ନେତ୍ରେ ଭାଷିଲେ ଉତ୍ତର—
"ବିଭୁଙ୍କ ପଦ୍ମରେ ଯେତେ ଏ ଜଗତେ ଜନ
ସେନେହେ ନୁଆଁନ୍ତି ମଥା, ଲେଖେ ତାଙ୍କ ନାମ ।"
"ମୋ ନାମ ଲେଖିଛ ?" ପୁଚ୍ଛାକଲେ ଗଣପତି,
"ନାହିଁ, ଲେଖିନାହିଁ," ଋଷି କହିଲେ ଲେଉଟି ।

ନୈବେଦ୍ୟ ନଇଁଲା ସ୍ୱରୁ, ତେବେ ଘତେ ମୁଖେ
ଆଶା ଜ୍ୟୋତି, ଗଣପତି ବଖାଣିଲେ ସୁଖେ—
"ଏତକ ମାଗୁଣି ପଦେ, ଲେଖ ପ୍ରଭୁ ମୋରେ—
'ଏ ଜଣେ, ସେନେହେ ଯେତ୍ତୁ ଯେନେ ନାସ୍ତି ନରେ'।"
ଲେଖିସାରି, ଋଷି ତହୁଁ ହେଲେ ଅନ୍ତର୍ଦ୍ଧାନ,
ନଶୀଥେ ଆସିଲେ ପୁଣି ତହିଁ ଆରଦ୍ଧନ।
ଶ୍ରୀଅଙ୍ଗ କରଣ ଝଳ ମଣ୍ଡିର ଅବନୀ,
ଦେଖାଇଲେ ହାତେ ସ୍ୱର୍ଣ୍ଣ ପୁସ୍ତିକାଟି ଯେନ।
ବିଭୁଙ୍କ ପଦ୍ମରେ ଯେତେ ଏ ଜଗତ ଜନ
ସେନେହେ ଲୁଆଁନ୍ତି ମଥା, ସେ ସଭିଙ୍କ ନାମ।
ସର୍ବୋପରି, ଗଣପତି ଦେଖନ୍ତି ଚକିତ,
ନିଜ ନାମ ଲେଖା ଅଛି କନକ-ଅଙ୍କିତ।



# ଅନ୍ଧ ପିଲା

କି ଦ୍ରବ୍ୟ ଆଲୁଅ    କହ ତୁମେ ସବେ
ମୁଁ ତ ଜାଣିପାରୁ ନାହିଁ,
ଚକ୍ଷୁ ଥିଲେ ଶତ୍ତେ    କି ସୁଖ ଉପୁଜେ,
ଏ ଅନ୍ଧରେ ଦିଅ କହି ।
ଦେଖୁଛ ଝଟଏ    ଛବି ବୋଲି କହ,
ଉଜ୍ଜଳ ତପନ ଶିଖା,
ମୁଁ ଭୋଗେ ତପତି    ତାର, ସେ କେମନ୍ତେ
ଦିନ ରାତି ପାରେ କରି ?
ମୋ ଦିନ ରାତି ତ    ନିଜେ ମୁଁ କରୁଛି
ଖେଳ ନିଦ୍ରା ଅନୁକ୍ରମେ;
ଏ ପାପ ଜୀବନେ    ନ ଶୁଅନ୍ତି ଯେବେ,
ରାତି କି ହୁଅନ୍ତା ଦିନେ ?
ମୋ ଲାଗି ଦୁଃଖିତେ    ଝୁରୁଛ ନିରତେ
ଶୁଣୁଛି ବିଷାଦେ ମୁହିଁ;
ଜାଣିନି ଯେ ସୁଖ,    ହରାଇ ତାରେ, ମୁଁ
ମିଛେ କପାଁ ହେବି ଦୁଃଖୀ ?
ଭାଗ୍ୟ ଲେଖି ନାହିଁ    ବନ୍ଧୁ ପା, ବଅର୍ଥେ,
ଝୁରିବ କପାଇଁ ତାରେ ?
ଗାଉଥିଲାପାଏ    ଏ ଗୀତ, ରଜା ମୁଁ
ଅନ୍ଧ ପିଲାଟିଏ ହେଲେ ।

# ସୂର୍ଯ୍ୟମୁଖୀ

କେତେ ତରୁଲତା ଉପବନେ ଏଥି
ଶ୍ୟାମଳ ସୁବେଶେ ବିକଶନ୍ତି ନିତି ।
ତାଙ୍କୁ ଡାଳେ ଝରି ପଡ଼ଇ ମାଧୁରୀ,
ଉଛୁଳଇ ଘନ କାନନରୁ ଦୂରି ।
ସୁଧାସ୍ରୋତ ସମ ବହଇ ସମୀର
କୁଞ୍ଜ କୁଞ୍ଜେ ଗୀତ ଖେଳାଇ ରୁଚିର ।
ଡାଳେ ଡାଳେ ପତ୍ର ଶ୍ୟାମଳ ଗହ୍ୱରେ
ଲୁଚି ପରଭୃତ ଗାଏ କି ମଧୁରେ ।
ଏ ସକଳ ମେଳେ ଛବିଳ ମଉନେ
ରହିଛୁ ରେ ଫୁଲ, କି ଗୂଢ଼ ଧିଆନେ ?
ରାତ ଉଜାଗରେ ବସୁ ତୁ ଅନାଇଁ
ଉଷା-ଅଙ୍କେ ରବି ଉଇଁବାର ପାଇଁ ।
ପାହାନ୍ତ ତପନ ପାଟଳିମା ଶିରୀ,
କି ଅଛି ମହୀରେ ହେବ ତାର ସରି ?
ତହିଁ ତୁ ପୁଲକେ ପରାଣ ନବେଣି,
ସେ ଶୋଭା-ସମ୍ଭାରେ ନିତି ଯାଉ ମିଶି ।
ଉଚ୍ଚ ଉଠେ ରବି ଯାଏ ଅପସରି,
ତା ଭୁଲେ ଢଳଇ ତୋ ବଦନ ଶିରୀ ।
ସେ ରବି ଦୋସର ପ୍ରତୀଚୀ ଭୂଧରେ
ପାଟଳ ସ୍ୱଲୋକେ ବୁଡ଼ିଯିବା ବେଳେ
କି ଭାଳ ଭୁରିତେ ଘେନ ତୋ ମେଲାଣି,
ରାତି ଉଜାଗରେ ବସିରହୁ ପୁଣି ।
ଦିନୁ ଦିନ ରବି ରୂପ ଅନୁସରି,
ପୂର୍ବରୁଁ ପଶ୍ଚିମେ ଯାଉ ଢଳି ଢଳି ।

ଏ ଯେ ଏ ମରତେ ସରଗ-ସମ୍ଭାର,
ଚରଣ ପୁଲକେ ସୁଖେ ଖେଳିବାର;
ଢନେ କି ମନୁ ମୁଁ ପାରିବ ବିନଯାରି ?
ରହିବ କେମନ୍ତେ ମୁରୁଛି ଏ ଶିଶୁ ?
ଗୋଲାପ, ମନ୍ଦାର, ବକୁଳ, ମାଲତୀ,
ଯୂଇ, ଜାଇ, ମଲ୍ଲୀ, ନିଆଳୀ, ସେବତୀ—
କେତେ କେତେ ଫୁଲ ମଧୁ ସଉରଭେ
ଉପବନେ ଏଥି ନାଚନ୍ତି ଗରବେ ।
ଗୋଟିରୁ ଗୋଟିଏ ବଳି ବିମୋହନ
ବନଦେଶେ କିବା ଛବି ଅତୁଳନ !
ଗୋଟି ଗୋଟି ହୋଇ ଖେଳି କଶଳପେ,
ଭସାଇ ଦିଅନ୍ତି ସୁରଭି ମଳୟେ ।
ଏସବୁରୁ ବଳି ମଧୁର ଆତୁର,
ତୋ ବଦନ ଧୀର ବଚନ ମାଧୁରୀ,
ଏ ଯେ ତୋର ଗୁରୁ ସରଗ ପୀୟୂଷ,
କନକ ବଦନେ ମୃଦୁ ମଧୁହାସ,
କି ଅଛି ଜଗତେ ହେବ ତାକୁ ସରି,
ଫୁଟାଇ ତା ପାଶେ ଦେଖାଇବ ଶିଶୁ ?
ତହୁଁ ବଳି ପୁଣି ଏ ଗୂଢ଼ ଧିଆନ,
ସୁଖେ ଦୁଃଖେ ସମ ମନ ସନମାନ ।
ଡାକିଆଅ, ଫୁଲ, ଡାକିଥା ରେ ରତ୍ନ,
ତୋ ମନ ନୟନ ଦୁରୁ ଦୂରେ ରହିଁ ।
ଯେତେ ଦିନ ଫୁଟି ଶୋଭିବୁ କାନନେ,
ବସି ରହିଁଥାଅ ଫୁଲକ ମଣ୍ଡନେ ।

---

# ନିଦାଘ ସରସୀ

ଶୁଖିଛି ମୋ ସାଗ୍ର ସୁନୀଳ ଜଳଧି
ଆତପେ ହୋଇଛି ଲୀନ;
ଢଳ ପଦା ମାଳେ ମିଶି ସେ ମୋ ତନୁ
କବା ଆଡ଼ା ସ୍ଥାନମାନ !
ଜଳ-ଦରପଣେ ମୁକ୍ତା ପ୍ରତିଫଳେ
ସମୀରେ ଖେଳାଇ ଶିର,
ରବି-ହେମକର- ଅଲକ୍ଷ୍ୟ-ଶରଣେ
ବସୋଇ, ଜୀବନ ଭାର ।
କମଳ-କଳିଟି ବିକଶୁ ଯେ ଥିଲା
ଅବନୀ ଗଗନ ମୋହି,
ଜୀବନ ପ୍ରଭାତେ ଶାଖା-ତଳପେ ତା
ମଜ୍ଜନେ ପଡ଼ିଛି ଶୋଇ !
ବାଟର ବାଟୋଇ ବାଟେ ଚାଲିଯାଏ
ଉଦାସ ଚରଣେ ଆଜ,
ନମିଷେ କି ଚାହେଁ ଭାଳେ ମୋ ସ୍ଵଗତ
ସୋହାଗ ସମ୍ପଦରାଜି ?
କି ଅଛି ମୋର ଯେ ପଖାଳି ଦେବ ତା
ଧୂଳି- ବିଲେପିତ ପାଦ,
ମୋ ସୁଧା-କଣିକା ଅରପି ହରିବ
ମନୁ ମନ-ଅବସାଦ ?

ନଦୀ-ଶୁକ୍ତିପୁଟେ ହସନ୍ତେ ଯା କୋଳେ
ବଦନ ରଜତ ହାସେ,
କୋଟି କଇଁ-କଳ, ତା ତନୁ ପୂରିଛି
ବନ କଣ୍ଟା ବୁଦା ଘାସେ ।
ଯେତେ ମୋ ସମ୍ପଦ, ସରିଛି ସକଳ,
ଋତୁ ଆବର୍ତ୍ତନେ ଭୁଲି,
ଯାନହୀନ ବେଶେ ଦବା-ନଦୀ ନତ
ପଡ଼ ମୁଁ ହେଉଛି ଘାର ।
ଜଳବେଣୀ-ବନ୍ଧେ ସନ୍ତରନ୍ତେ ସୁଖେ
ଟେ ଜଳଚର ଯହିଁ,
ଶୃଗାଳ କୁକୁର ବକଟ ନନାଦେ
ବୁଲନ୍ତି କ୍ଷୁଧାର୍ତ୍ତ ହୋଇ ।
ଆଉ କପାଁ ନଭେ ନବୀନ ଜଳଦ,
ଢାଳୁଛ ସଲିଳ ଧାରା;
ନଠୁର ହେନେକେ ଉଡ଼ାଉଛ ମିଛେ,
ଏ ତନୁ-ତାପିତ ଖରା ?
ଅଧେ ମୁଁ ଜଳିଛି ଯେ ଗ୍ରୀଷ୍ମ ଆତପେ,
ପୂରାଇ ଜାଳିବ ତହିଁ;
ଘନ ବାରିଧାରା, ତଟିନୀ ପ୍ରବାହେ
ଆଉ ତ ଭୁଲିବ ନାହିଁ ।
ଗିରିଶିଳା-ଶିରେ କରତ ହରଷେ,
ସାଗର-ସିକତା-ଶେଷେ,
ମୋ ଭଳି ସହସ୍ର ନରେଖ ଅଗ୍ନିରେ
ବୁଡ଼ାଇ ବିଷାଦ ଲଜେ ।

---

# କୋଇଲି

ଆସ ଆସ, ନବ ଉସତ ଅତିଥି
ମୁଦେ ମୁଁ ଶୁଣିବି ତୋ କଣ୍ଠ ସ୍ୱନ
ଚଢ଼ଇଟି ବୋଲି ବୋଲିବି କି ତୋତେ,
କି ଅବା ଉଡ଼ନ୍ତ ଅମିୟ ତାନ ?
ସଦା ଯାଏ ଚଳିଁ ଢେଉର ମୁଁ ଶ୍ରବଣ,
ଶୁଣିଛି, ପିକ, ତୋ ପଞ୍ଚମ ସ୍ୱର;
ଗଛୁ ଗଛେ ଉଡ଼ିଯାଏ ସେ କ୍ଷଣକେ,
ଯାଏଖି ଶୁଭି ପୁଣି ହୁଅଇ ଦୂର ।
ବନ କାନେ ସିନା କହୁ ତୁ ଗୁପତେ,
"ଆସୁଛି ମଳୟ ସୁମନ ଯେନ;"
ନିମିଷେ ମୋ ହୃଦେ ଖେଳାଉ, କୋଇଲି,
କେତେ ଅଜାତ ସ୍ୱପନ ଆଣି ।
ଆଆ ଆଆ ଆଆ, ବସନ୍ତ ଦୂତ ରେ,
ପକ୍ଷୀ ତୁଚ୍ଛ କେହ୍ନେ ମଣିବ ତୋତେ ?
ଦେଖିଛି ତ ତୁ କି ଅଦେହ ପ୍ରତିମା,
ସ୍ୱରେ ମାତ୍ର ଗଢ଼ା ହୋଇଛୁ ସତେ ।
ବାଲ୍ୟତ ବୟସେ ସୁଖ ଦୁଃଖେ କେତେ
ଶୁଣିଛି ହରଷ ଚିତ୍ତେ ତୋ ଗୀତ;
ଶୁଣି, ଖୋଜ ତୋତେ କେତେ ବୁଲୁଁ ଥିଲି,
ଗଛ ବୁଦା ଲତା ଗହଳେ ନିତି ।

ତୋ ପଛେ ଗୋଡ଼ାଇ କେତେ ବୁଲୁଥିଲି
ବନୁଁ ବନେ, ମାଳୁଁ ମାଳେ ମୁଁ ଧାଇଁ;
ଦିନେ ଦେଖିଲେ, ପିକ, ତୋ ରୂପ ନେତ୍ରେ ମୁଁ
ଦେଖିଥାନ୍ତି ଆଧା କ୍ଷଣକ ପାଇଁ ।
ଆଜ ମଧ୍ୟ ଏବେ ସେହି ଭଳି ଗୀତ
ଶୁଣୁଛି, ଶୋଇ ମୁଁ ପ୍ରାନ୍ତର ଘାସେ;
ଶୁଣି ସେ ସୁଦୂର ଅଜ୍ଞାତ ସ୍ମୃତିଟି
ଲେଉଡ଼ ମୁଁ ନିମିଷେ ଆଣଇଁ ପାଶେ ।
କି ଆଉ କହିବି ତୋତେ, ପରଭୃତ ?
କହୁଛି ଏତିକ, ଶୁଣିବୁ ଆସ,
ଏ ଯେଉଁ ମହୀରେ ରହିଛି ଜୀବେ ମୁଁ,
ଏ ତ ଇନ୍ଦ୍ରପୁରୀ ତୋ ଯୋଗ୍ୟ ବାସ ।



# ମାୟାମୃଗ

ପର୍ଣ୍ଣକୁଟୀ ମଧ୍ୟେ          ଅଯୋଧ୍ୟା ନରେଶ
ଦୂର ପଞ୍ଚବଟୀ ବନେ,
ବସି, ହର୍ଷେ ସୀତା          ଲକ୍ଷ୍ମଣ ସଙ୍ଗରେ
ରତ ପ୍ରୀତ ଆଳାପନେ ।
ଆସି ଭରା କାହୁଁ          ଧାଇଁ ସ୍ୱର୍ଣ୍ଣ-ମୃଗ
କୁଟୀର ଦୁଆର ପାଶେ,
ଚଞ୍ଚଳ ଝଟକ          ପ୍ରାୟେ ନିମିଷକେ
ଲୁଚିଗଲା ବନବାସେ ।
ନେତ୍ର ତା ମୂରତି          ନ ପାରିଲେ ପୋଛି
ଜନକ-ରାଜ-ଦୁହିତା,
କହିଲେ, "ହେ ନାଥ          ନ ଆଣିଲେ ଧରି
ଅନ୍ନ ମୋତେ ହେବ ପିତା ।"
ଶୁଣି ରାମ ବେଗେ          ଧନୁଶର ହାତେ
କୁଟୀରୁ ହେଲେ ବାହାର,
ବୁଲି ବନେ ମୃଗେ          କେତେ ତ ଖୋଜିଲେ
ପୁଣି ନ ଦେଖିଲେ ତାର ।
ବନୁ ବନେ, ଗିରି—          ସଙ୍କଟୁ ଗିରିକି
ଯାଉଛନ୍ତି ଅଯୋଧ୍ୟାସାଇଁ,
ତେଣେ, ସୀତା ସହ          ଉଦ୍‌ବିଗ୍ନ ଲକ୍ଷ୍ମଣ
ବାଟ ଚାହିଁଛନ୍ତି ରହି ।

କେତେବେଳେ ବନୁ ଆସିଲା ଶବଦ
"ଲକ୍ଷ୍ମଣ, ରଖ ଜୀବନ,"
ଶୁଣି କାନେ ସୀତା ଚହିଲେ ଚମକି
ଅଧୀର ହେଲେ ଲକ୍ଷ୍ମଣ ।
କହିଲେ ସୀତା, "ଏ ଭାଇ କଣ୍ଠ ସ୍ୱର
ଆପଦେ ପଡ଼ିଲେ କାହିଁ,
ଯାଅ ଏ ମୁହୂର୍ତ୍ତେ, ହେ ଲକ୍ଷ୍ମଣ, ତୁମ୍ଭଁ
ଭାଇଙ୍କି ତାରିବା ପାଇଁ ।"
ମନ ନ ମାନିଲା, ତଥାପି ସୌମିତ୍ରି
ଚଳିଲେ କୁଟୀର ତେଜି,
ଘୋର ବନେ ସୀତା ରହିଲେ ଏକାଟି
ଜପନ୍ତେ ରାମ ନାମ ହେଜି ।
ବୁଲୁଁ ବୁଲୁଁ ଦ୍ୱାରେ ଆଗତ ଭିକ୍ଷାର୍ଥୀ
ମାଗଇ ଭିକ ଆତୁରେ,
ପତିବ୍ରତା ପତ୍ନୀ— କଲ୍ୟାଣ ମନାସି
ଭିକ୍ଷାନ୍ନ ବାଢ଼ିଲେ ଦୂରେ ।
କହିଲା ଭିକ୍ଷାରୀ, "କରେ ଆଣିଦେଲେ,
ନେବନି ସିନା ମୁଁ ଭିକ,
ପରବାସେ ପାଦ ପକାଇବ, ମୋତେ
ମଣ କି ଏତେ ନାସ୍ତିକ ?"
ଶଙ୍କିତେ ଭିକ୍ଷାନ୍ନ ଆଣି, ଦ୍ୱାରଦେଶୁଁ
ବଢ଼ାଇ ଦେଲେ ମୈଥିଳୀ,
କି ହେଲା ! ଭିକ୍ଷାର୍ଥୀ ପ୍ରକାଶି ସ୍ୱରୂପ
ଧରିଲା ଶ୍ରୀକର ଭିଡ଼ି ।

ଦଶମୁଣ୍ଡ ତାର          ଦେହ ଉପରକୁ
ଝକଟ ଦିଶଇ ଅତି,
ଫୁଲଇ କୋଦଣ୍ଡ          ହାତ ଦେନ ପାଶେ,
ଦେଖି ମୂର୍ଚ୍ଛା ଗଲେ ପକ୍ଷୀ ।
ପୁଷ୍ପକ ରଥ ତା          ଥିଲା ପାଶେ, ତାଙ୍କୁ
ବଳେ ସେ ଥାପିଲା ତହିଁ,
ଭୟତ୍ରସ୍ତା ହସ୍ତା          ଜାନକୀ ବକଳେ
କାନ୍ଦୁଛନ୍ତି କହିଁ କହିଁ ।
ବାହୁଡ଼ ଶ୍ରୀରାମ—          ସୌମିତ୍ରି କୁଟୀରେ
ହୋଇଲେ ଚକିତ ଅତି,
ତେଣେ, ଉଡ଼େ ରଥେ          ସୀତାଙ୍କୁ ବସାଇ
ସେ ଦୈତ୍ୟ ଲଙ୍କା ନୃପତି ।
ସ୍ୱର୍ଣ୍ଣମୃଗ ରୂପେ          ମାୟାମୃଗ ଗୋଟି
ପେଷି ଯେ ଥିଲା ରାବଣ,
ସେହି ମାୟା ବଳେ          ହରିଲା ସୀତାଙ୍କୁ,
ବୁଝିଲେ ରାମଲକ୍ଷ୍ମଣ ।

# ଭାଇ

"ମୋ ଭାଇକ ଡାକ ଆଣି ଏଥି, ଏକା
ଖେଳି ମୁଁ ପାରୁ ତ ନାହିଁ,
ଫୁଲ ଅଳି ଘେନ ଆସଇ ବସନ୍ତ,
କାହିଁଛି ଆଜ ମୋ ଭାଇ ?

ରବି ହେମ କରେ ଉଜଳ ତା ଶିଖା,
ଉଡ଼ି ବୁଲେ ପ୍ରଜାପତି;
ତା ପଛେ ମୁଁ ଆଜ ନ ପାରେ ଗୋଡ଼ାଇ
ଡାକ ମୋ ଭାଇକି ଏଥି ।

ଯୋଡିଥିଲୁଁ ଯେତେ ଫୁଲ ଲତା ବନେ,
ଅଯତ୍ନେ ବଢ଼ନ୍ତି ତହିଁ;
ଫଳଗଛରେ ଦ୍ରାକ୍ଷା ଭ୍ରଜପଡ଼େ ତଥ
ଆଣ ମୋ ଭାଇରେ ଖୁଜ ।"

"ଶୁଣିବ ନାହିଁ ସେ ତୋ ଡାକ, ରେ ବାପୁ,
ଆସିବ ନାହିଁ ତ ବାରେ;
ବସନ୍ତ ସୁମନ ସର ସେ ବଦନ
ନ ଦେଖିବୁ ମହୀତଳେ ।

ଫୁଲ ଯେଉଁ କ୍ଷଣେ ଶୋହେ, ସେ ଶିଶୁ ତା
ଭାଲେ ଲେଖିଥିଲା ବନ୍ଧୁ,
ତୁ ଏବେ ଏକାକି ଖେଳବୁ, ରେ ଧନ,
ସରଗେ ଅଛି ତୋ ଭାଇ ।"

"ଛାଡ଼ି କି ଗଲା ସେ ତା ଫୁଲ, ତଡ଼େଇ ?
ମିଛେ କି ଡାକବ ମୁହିଁ ?
ଏ ହର୍ଷ ବସନ୍ତେ ଉନେ କି ମୋ ପ୍ରାଣେ
ଫେରି ସେ ଆସିବ ନାହିଁ ?

ନିର୍ଝର ପୁଲିନେ ବନପଥେ ସୁଖେ
ସେ ବୁଲି ଗଲା କି ସବୁ ?
ଖେଳିବାର ବେଳେ ଡାରେ, ଆହା, ଆଉ
ସ୍ନେହ ମୁଁ ଥାଆନ୍ତି କରି ।"



# ଅନାଥ ଶିଶୁ*

ଆଜ କପାଁ ରଡ଼ୁ ଶିଶୁ, ଡକଲେ ଏଭଳି ?
ବୃଥା ତୋର ଏତେ ଡାକ, ଏତେ ତୋର ଅଳି !
ପାଷାଣ, ପାଦପଗଣ କି କରିବେ ଶୁଣି ?
ବୃଥା ଏତେ ଆକୁଳତା, ନହୁଅ ବାହୁନ ।

ଏହି ଯେ ଆସିଲ ମୁହିଁ ନଗ-ପୃଷ୍ଠେ ବସି,
ବନ୍ଧୁଗଣ ମେଳେ ଯିବ ନାଚ ଖେଳ ହସି;
ଶୁଣୁ ଶୁଣୁ ତୋ ଡକଲ ନ ଶୁଭିବ ଆଉ,
ଏ ରୂପଟି ଲୁଚି ପୁଣି ଯିବ ରହୁଁ ରହୁଁ ।

କପାଇଁ ରାହୁ ରେ ଶିଶୁ, କାହାକୁ ଅନାଇଁ ?
କେହି କି ଶୁଣଇ ଏଠି ତୋ ବେଦନା ଗାଇଁ ?
ଏହିକ୍ଷଣି ଘୋଟିଯିବ ଜବଡ଼ ଅନ୍ଧାର,
ନ ଦିଶିବ କୂଳ, ପନ୍ଥା, ପାଣି କି ପାହାଡ଼ ।

---

* ଚିଲିକା ଭିତରେ ପାହାଡ଼ରେ ଥିବା କାଳିଜାଇ ଦେବୀଙ୍କଠାରେ ବଳି ଦେବାକୁ ଲୋକେ ଯେଉଁ ସବୁ ବୋଦା ନିଅନ୍ତି, ତାଙ୍କୁ ନ ହାଣି ପାହାଡ଼ରେ ଛାଡ଼ିଦେଇ ଆସନ୍ତି । କବି ଥରେ ସାଙ୍ଗ ସାଥୀଙ୍କ ସହିତ ସେଠାକୁ ଯାଇଥିଲେ । ଲେଉଟିଲାବେଳେ ନାଆ ଚଳିବାରୁ ଦେଖି ଛେଳିଛୁଆଟିଏ ବହୁତ ରଡ଼ିଲା । ମାତ୍ର ନାଉରୀ ତାକୁ ନାଆରେ ଆଣିବାକୁ ନାସ୍ତି କଲା । ନାଉରୀଙ୍କର ବିଶ୍ୱାସ ଯେ କାଳିଜାଇ ପାହାଡ଼ର ଜନ୍ତୁ ଆଣିଲେ ନାଆ ବୁଡ଼ିଯିବ ।

ସେତେବେଳେ କି କରିବୁ ଅଭାଗା-ପରାଣି,
କେଉଁଠାରେ ଆଶ୍ରା ନେବୁ ନିଜ ଲୋଡ଼ା ଜାଣି ?
କୁଆ ଶୁଆ ବସା ଖୋଜି ଯିବେ ତହିଁ ଉଡ଼ି,
ମାଛ ବେଙ୍ଗ ଯିବେ ସୁଖେ ପାଣି ତଳେ ବୁଡ଼ି;
ଚଳିକା ମଣ୍ଡିବ ନିଜ ନିଶୀଥ ଶୟନେ,
ପାଷାଣ ପାଦପେ ନିଦ୍ରା ଭଜିବେ କାନନେ ।
ତୁହି ଏକା କି କରିବୁ ଅନାଥ ଶିଶୁଟି,
ରାତି ସାରା ରଡ଼ି ରଡ଼ି ଯିବ କି ତୋ ଛାତି ?

ସେନେହେ ଯେ ପାଳିଥିଲା ଦୁଃଖିନୀ ଜନନୀ,
କେତେପରି ଝୁରୁଥିବ ଏକଲେ ବାହୁନି;
ଜାଣୁଥିବ ହରାଇଛି ପରାଣର ଧନ,
କାହିଁ ସେ ବୁଝିବ ତୋର ଏ ଦୁଃଖ କଷଣ ?
ପଶୁକୂଳେ ଜନମିଛି ସରଳ ସେନେହେ,
କି ଜାଣିବ କି ବସ୍ତୁର ମାନବ ହୃଦୟେ ?
ନିଷ୍ଠୁର ହାତେ ତା ଛିଡ଼ି ଯେଉଁ କ୍ରୂର ପ୍ରାଣୀ
ଛାଡ଼ିଲା ଏ ଅପନ୍ତରା ଦ୍ୱୀପେ ତୋତେ ଆଣି,
ତା ମନୁ-କୋଳରେ ଶିଶୁ ଜନମି କି ନାହିଁ ?
ସ୍ନେହ-ପ୍ରୀତି-ଛନ୍ଦ ହୃଦେ ନାହିଁ କି ସେ ପାଇ ?
ଜଳଧି-ଦେବତା ମା ଗୋ ଜଗତ-ତାରିଣି,
ଏ ଜଳ-କଲ୍ଲୋଳେ କେଳି କରୁଛ ଜନନୀ,
କୋଳେ ତୋଳି ରଖ ଏହି ଅନାଥ ଶିଶୁଟି;
ଜଳ-ବେଣୁ-ତାନେ ଛନ ଯାଉ ତାର ଛାତି ।



# ଋଷିକୁଲ୍ୟାର ମିନତି

ଭୂଧର କନ୍ଦରେ                ଗହନ କାନ୍ତାରେ
ଜନମି ସୁଦୂରେ କାହିଁ,
ଶତ ଗ୍ରାମ ପଦା                ଭେଦି, ଋଷିକୁଲ୍ୟା
ପଥରେ ଆସିଛୁ ଧାଇଁ ।

ବାଟେ ରୋଧୁଥିଲେ                କେତେ ଗିରି ଶିଖ,
କହୁଥିଲେ, 'ନ ଯାଅ ଦୂରେ,'
କେତେ କ୍ଷୁଦ୍ର ହ୍ରଦ                ଲୋଡୁଥିଲେ ତାକୁ
ବନ୍ଧୁ ଧରିବାକୁ ଜରେ ।

ନ ଶୁଣି ସେ କଛୁ                ଆସିଛୁ, ଜୀବନ
ସାଗରେ ଦେବାକୁ ନନ୍ଧି,
ସିନ୍ଧୁ ଅଙ୍ଗେ ସିନା                ତା ଅଙ୍ଗ ମିଶିଲେ
ଧନ୍ୟ ସେ ପାରିବ ହୋଇ ।

ସିନ୍ଧୁ ସିନା ତାକୁ                ଭୁଲାଇ ଭୁଲାଇ
ଘଟେ ଫେରାଉଛି ପେଲ,
ଗୋଟି ଗୋଟି ଢେଉ                ପେଷି, କହୁଅଛି
"କଥା ମାନ ଯାଅ ଫେରି ।

ମୁଁ ସ୍ଥିର ସମୁଦ୍ର　　　ଖାରେ ଫଣ ଗଢ଼ା
　　ମୋ ଫୋଡ଼ା ଫଗ୍ଣ ଗୋଟି,
ତୋ ମଧୁ ଶଯ୍ୟାର　　　ଅଁଷି କଣ୍ଟା, ନଢ
　　କୋଳେ ମୋ ଫିଟୁ ଲେ ଲୁଟି ?"

ଶୁଣି ଋଷିକୁଲ୍ୟା　　　କାନ୍ଦି କହେ ଧୀରେ
　　"ନ ଭଣ ନିଠୁର ବାଣୀ,
ତୁମ ପ୍ରତି ପ୍ରୀତି　　　ବହି ମୁଁ ଆସିଛି,
　　କ୍ଷୀର କ୍ଷାର ନାହିଁ ଜାଣି ।

"ଏ ଖାରେ ଢାଳିବ　　　ମୋ କ୍ଷୀଣ ଜୀବନ,
　　ଅନ୍ତର କାମନା ମୋର;
ସେ ପାଇଁ ବହୁଛି　　　ଏ ପ୍ରାଣ ଭାର ମୁଁ,
　　ପକାଇ ଦିଅ ହେ କୋଳ ।

"ନୋହିଲେ ନେଟିବ　　　ସଇକତ ଶେଯେ,
　　ପଶିବ ଭୂଗର୍ଭେ  ଧୀରେ,
ପଶିଥିଲେ ଯେମନ୍ତେ　　　ବସୁଦେ ଜାନକୀ
　　ଶ୍ରୀରାମ ନିଠୁର ତୀରେ ।

"ସ୍ନେହ କି ସିନ୍ଧୁ ହେ,　　　ନ ବୁଝ ହୃଦୟେ,
　　ବନ୍ଧୁ ଏ ତରଳ ପ୍ରାଣ ?
ତୁମ ବିନା ମୋର　　　ଅଛି କାହିଁ ଗତି
　　ଦିଅ ମୋତେ ବକ୍ଷେ ସ୍ଥାନ ।"



# ଗଣ୍ଠି ଧନ-ସାଥୀ

ମାଟି ଘାଟେ ବସି ଏକା ଚଣ୍ଡାଳ ପିଲାଟି
ଅଳ୍ପ ଫଳାହାର ତା'ର ଖାଉଛି ସାଉଁଟି ।
ବାଲି ଧୂଳି ମାଟି ସଙ୍ଗେ ମିଶିଯିବ ବୋଲି,
ରଖିଛି ଖପରାଟିରେ କି ଯତନେ ଭରି ।

"କାହା ପ୍ରାଣଧନ ଆରେ ହୃଦୟର ମଣି,
କେତେ ସ୍ନାନମାନ ଏଥି ନୋହୁଛୁ ତୁ ପୁଣି !
ଘରେ ବୋଉ କୋଳେ ନେଇ ବସାଇ ଆଦରେ,
ଭୁଞ୍ଜାଉ ଥାଆନ୍ତା ଗ୍ରାସ କି ସେନେହଭରେ !

"ତୁ ଯେ ମାଟିତଳେ ଏଥି ହେଉ ନରମାଛି,
ଲବେ ହେଲେ ଆଜ ସେତୁ ଜାଣିପାରୁଛୁ କି ?
ଦଇବ ଜନମ ଦେଲା ଚଣ୍ଡାଳର କୁଳେ,
ଏଭଳି କି ଲୋଟିବାକୁ ଧୂଳି ମାଟିତଳେ ?

"କି ସୁଖେ ମୁଁ ଅଧମର୍ମେ ବସି ନିଶିଦିନ,
ବିଶ୍ୱ-ଶିଶୁ ଭୁଞ୍ଜି ମୋର ଯାଉଛି ଜୀବନ !
ଏତେକ ଅନ୍ତର ବନ୍ଧ ଏକୁ ଆନ କରି,
ଏ ସାରା ସଂସାର ପୁଣି ସୃଜନ୍ତି କପରି ?

ଯାଅ ବାବୁ, ଫେର ଯାଅ ଘରକୁ ତୁ ତୁରନ୍ତେ,
ବୋଉ-କୋଳେ ବସି ଭାତ ଭୁଞ୍ଜିବୁ ଉଲ୍ଲାସେ ।”
ଏତେ ଭଲ ପାର୍ଶ୍ୱାସ ଚେଜଲି ମୁଁ, ଦେଖି,
ଫଳାହାରୁ ମୁଠେ ମୋର ବଢ଼ାଇଲି ଡାକି ।

କି ବସ୍ତୁର କଳ୍ପ ମନେ, ତାକୁ ସିନା ଜଣା,
ମୁଁ ଯେ ନେବ କନା, ହୃଦେ ଅନ୍ତ କଳପଣା ।
ନିମିଷେ ରହିଲେ ଥରେ, ଦୋଦୋଚାଞ୍ଚ ହୋଇ
ମଣ୍ଡନେ ଯୋଜନେ ରହୁଁ ପାଖେ ତାର ଯାଇ ।

ନାରଜ ହେବାରେ ମୋର ନ ବଳଲି ଚିତ୍ତ,
ପକାଇଲି ମୁଖେ ମୁଁ ସେ ମୁଠିଏ ଭୁଜତ ।
ମାଟି ଘାସେ ବସିଲି ସେ ପିଲଟିର ଭୁଲେ,
ମୁଠେ ସେତୁ ଖାଏ ନିଜେ ମୁଠେ ଦେଇ ମୋତେ ।

ଏ ନରକେ ବନ୍ଧୁ ବୋଉ, ଥିଲେ ଆଜି ରହୁ,
ଏତେ ସ୍ନେହମାନ ହୃଦେ ପାରନ୍ତି କି ସହୁ ?
ବେଶକ ନଅନ୍ତୁ ଘର ବେଣି କର ପାତ,
ମୁଁ ତୋ ଗଣ୍ଡିଧନ, ଏ ତୋ ଗଣ୍ଡିଧନ-ସାଥୀ ।



## ※ କନିକା ନୃପ କୁମାରୀ

ଝଲକୋଟେ ଚଳି ଯିବେ ନୃପବର,
କହନ୍ତି, "ନାଉରି, ଶୀଘ୍ର ବହନ;
ଆର କୂଳେ ବେଗେ ପାରି କରିଦେଲେ,
ଏ ମୋହର ଗୋଟି ପାଇବୁ ଜାଣ ।"

"କିଏ ତୁମେ ଆଜ ଏ ପାଣି ପବନେ
କାଳଜାଇଗଣ୍ଡ ହେବ ହେ ପାର ?
"ଝଲକୋଟ ରାଜ-ନନ୍ଦନ ମୁଁ ପରା,
ଏ ବାଳା କନିକା ନୃପ କୁମାରୀ ।

ତିନି ଦିନ ଧାଇଁ ଆସିଅଛୁ ବେନି,
କନିକା ସଇନେ ଛନ୍ତି ଗୋଡ଼ାଇ;
ବାଟେ ପଡ଼ିଗଲେ ଧରି ତାଙ୍କ ହାତେ,
ମୋ ରକ୍ତେ ନଦର ତିନ୍ତିବ ଭୂଇଁ ।

ଚଢ଼ି ଘୋଡ଼ା ପରେ ଆସନ୍ତି ମାଡ଼ି ସେ;
ଆମ ପଟା ଯେବେ ପାଇବେ ତଳେ,
ମୋତେ ତ କରିବେ କାଟି ବେନି ଖଣ୍ଡ,
କେ ରକ୍ଷିବ ବାଳା ହାଦା ମଧ୍ୟରେ ?"

---

※ ଘଟଣାଟି ବିଲାତର । କିନ୍ତୁ ବିଷୟ ସହଜବୋଧ୍ୟ କରିବା ନିମନ୍ତେ ସ୍ଥାନମାନଙ୍କର ନାମ ଓଡ଼ିଶାର ସ୍ଥାନମାନଙ୍କ ନାମ ଅନୁସାରେ ଦିଆଯାଇଅଛି ।

ସେଇ ମନ କଥା କହିଲା ନାଉରି,
"ଯିବି ମୁଁ, ମଣିମା, ଅଛି ତିଆରି;
ଦେଲେ ଦିଅ ମୂଲ, ନ ଦେଲେ ନ ଦେବ;
ଏ ବାଳାଙ୍କ ଲାଗି ଯିବାର ମୋର ।
ମୋ ଗୁଣ ପକାଇ କହୁଛି, ଆପଦେ
କ୍ଷଣେ ଏଥି ନାହିଁ ରହିବେ ବାଳୀ;
ମେଘ ବରଷୁଛି, ବତାସି ପିଟୁଛି;
ହେଲେ, ମୁଁ ଭୁରସେ କରିବି ପାରି ।"
ଧନୁ ଘନ ବଢ଼ିଆସେ ବାଆ ପାଣି,
ଡାକନା ଡାକଇ ବିକଟ ଘୋଷେ;
ବିଧି ଦୁର୍ଘଟଣ ଦେଖି ବେନି ଜନ
ପ୍ରେମିକ ହୃଦୟ କମ୍ପଇ ତ୍ରାସେ ।
ପବନ ବୋହିଲା ଘୋର ଅଣଶ୍ୱାଶ,
ଦ୍ୱିଜନ କାଳିମା ଆସିଲା ଘୋଟି,
ପାରିକୁଦ ଦହେ ଘୋଡ଼ା ଟାପୁ ନାଦ
ନିକଟୁ ନିକଟ ଶୁଭିଲା ଅତି ।
"ଚାଲ, ବେଗେ ଚାଲ," ଭାଷନ୍ତି କୁମାରୀ,
"ବାଆ ପାଣି ଭଡ଼େ ହେଉଛି ଘତ;
ଏ ବନ୍ଧୁ କୋପ ମୁଁ ଭେଟିବି ହରଷେ,
ନ ଭେଟିବି ପିତା କୁପିତ ହାତ ।"
ଶ୍ୟାମ ଭୁଇଁ ପୃଷ୍ଠ ଛାଡ଼ିଲା ନାଉରି,
ଦୁଷ୍ଟ ସିନ୍ଧୁ ବକ୍ଷ କରିବ ପାରି;
ବାଆ ପାଣି ଭଗ୍ନ ହେଲା ଏତେଡ଼ ଟାଣ;
ଛାର ନର ହାତ କି ପାରେ କରି !

ତେବେ ହେଲେ କାଳ ମାରି ସେ ଚାଲୁଛି,
ନ ମାନେ ବତାସି ଜାଉର ତଳେ;
କନକା ନୃମଣି କୂଳେ ହୋଇ ଉଭା,
ଦେଖନ୍ତି ବିଷମ ତାଣ୍ଡବ ନାଟର ।
ବାଘ ହୋଇ ନଜେ ଜନ୍ତୁ ଦେଇଛନ୍ତି,
ପାଳିଛନ୍ତି ପ୍ରାଣୁଁ ଅଧିକ କରି;
ବାଲ୍ୟ ଅପରାଧେ ନମିତ ଶରୀରେ
ଫିଙ୍ଗି ହୃଦ ପୀଠୁ ଦେବେ କପର ?
ଅନାଇ ଦେଖନ୍ତି, ବତାସି ଅନ୍ଧାରେ
ବୁଡ଼ୁଛି ଦୁହିତା ଅତଳ ତଳେ;
ଉଠିବା ପାଇଁରେ ଟେକି ଏକ ହାତ,
ବେଢ଼ାଉଛି ଆନ ଟେକିଙ୍କ ଗଳେ ।
‘‘ଫେରିଆ, ଫେରିଆ” କହିଲେ ବିଷାଦେ,
‘‘ଫେରିଆ, ଗୋ ମାଆ, ନ ଯାଆ ଆଉ,
ହେଲା ଯା ହେବାର, ଫେରି ତୁ ଆଇଲେ,
ତୋ ପତରେ ନାହିଁ ଛୁଇଁବ କେହୁ ।”

କି ହେବ, ଏଡ଼ିବ ବିଧି ଘଟଣ କେ ?
ଏକା ପବନକେ ବୁଡ଼ିଲା ନାଆ;
ଝିଅ ମିଶିଗଲା ଶଲିକା ତରଙ୍ଗେ,
ନୃମଣି ବାହୁନ କାନ୍ଦନ୍ତି ଆହା !

---

# ଅର୍ଘ୍ୟ *

ପରାଣ-ଦେବତା କରି ପୂଜନ୍ତି ଯତନେ
ବସା ନଶି ହୃଦ-ପୀଠ ସ୍ନେହ ସିଂହାସନେ,
ନଇବେଦ୍ୟ ରୂପେ ଯାହା ଧରୁଛି ମୁଁ ଋତେ
ତୁମ ଯୋଗ୍ୟ କରି ଯେବେ ପାରନ୍ତି ବଞ୍ଚିତେ ।
ନିତ ଦିନ ଅବହେଳେ ବସି ଶ୍ରୀଚରଣେ;
କି ଯେ ତୁମେ, ଦେବ, ଚିହ୍ନି ନ ପାରିଲି କ୍ଷଣେ ।
ନିମିଷେ ପରାଣେ ଯେବେ ଉପୁଜେ ମୋ ଭ୍ରାନ୍ତି,
ଅପର ନିମିଷେ ହୁଏ ଦୋଷର ପ୍ରଶାନ୍ତି ।
ଉଦାସ ଅନ୍ତରେ ତେଜ ଆସିଲା ବେଳକୁ,
ହସହସେ ସ୍ନେହେ ସ୍ୱତ ବଚନ ଶ୍ରୀମୁଖୁ ।
ସରଗ ସମ୍ପଦେ ଚହ୍ନି ଖେଳଇ ଅନ୍ତର,
ଯେତେ ଯା ବୈରାଗ୍ୟ ମନୁ ବିସୋରି ସକଳ ।
କି ଦୁର୍ଲ୍ଲଭ ଉପାଦାନ ସୁଧାଧାରେ, ନିତ୍ୟ,
ଏ ମଧୁ ମୂରତି, ଦେବ, ଗଢ଼ିଅଛି ବିଶ୍ୱ !
ହାସ୍ୟେ ମିଶାଇଛି ଲୋତ଼ ଶୀତ ନେତ୍ର ବାରି,
ପାଷାଣେ ଦେଇଛି ସ୍ନିଗ୍ଧ ଶୈବଳମା ଛାଳ,

---

* ଏ ପଦ୍ୟର ବିଷୟାବଳୀ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କ ଲକ୍ଷିତ । କବି ତାଙ୍କର ନିତାନ୍ତ ଅନୁରକ୍ତ ସହକର୍ମୀ ଥିଲେ । ପଣ୍ଡିତ ଗୋପବନ୍ଧୁ କବି ଓ ସତ୍ୟବାଦୀ ବିଦ୍ୟାମନ୍ଦିରର ଅନ୍ୟାନ୍ୟ କର୍ମୀଙ୍କୁ ବିଶେଷଭାବରେ ସେବା ଓ ତ୍ୟାଗମନ୍ତ୍ରରେ ଦୀକ୍ଷିତ କରି ପାରିଥିଲେ ।

ଅମା ନିଶି ଅନ୍ଧକାରେ ଫୁଟାଇଛି ବିଧୁ,
ମରୁଦେଶେ ଫେଡ଼ଅଛି ପିକକଣ୍ଠ ମଧୁ;
ସ୍ୱପନ ସମ୍ପଦ ଲୋଡ଼ି ସରଗ ସମ୍ଭାରେ
ନିକ୍ଷୁଛ ସେ ଜନନ୍ତରେ ଏ ମର୍ତ୍ତ୍ୟ ଶରୀରେ ।
ବାଞ୍ଛିତ ବସ୍ତୁକୁଁ ସାଧି କି ସୁଖ ତିଆଗ,
ଦେଇଛ ଯାବତ ତେଜ ଜୀବନ ସୋହାଗ ।
ଆପଣା ସୌନ୍ଦର୍ଯ୍ୟ ଶିଖି କରନ୍ତି ଉପଚିତ,
ପରନ୍ତରେ ସମର୍ପିଛି ଭାଳୁଛ ନରଚିତ ।

କି ପୁଣ୍ୟ-ପ୍ରସାଦ ଜାଳି ହୃଦ-ନିକେତନେ,
ଚଉଦିଗ ପରଶୁଛ ମଧୁ ଆଲୋକନେ ।
ଜ୍ଞାନ ଗୌରବର କିବା ଗମ୍ଭୀର ବାରିଧି,
ରଖିଛ ହୃଦୟେ, ଦେବ, ନିତ୍ୟ କୋଟି ନିଧି ।
ଗୋଟି ଗୋଟି ଯେବେ ମୁହିଁ ନିରେଖି ନୟନେ,
ଚମକି ଶ୍ଳାଘନେ ପୂଜେ ଆତ୍ମବିସ୍ମରଣେ ।
ତୁମରି ନିଦେଶ ଆଜି ହୃଦ-ପୀଠେ ଧରି,
କରମ ସାଧନା ଭୂମେ ଅଛି ଅବତରି ।
ଏ ସୁଖ ବିଷମ ପଥେ ବିହରି ହରଷେ,
ମିଳିବ ଯାବତ ଯାଇ ଦୂର ଧ୍ରୁବ ପାଶେ,
ସେତେବେଳ ସନମାନେ ନଇବେଦ୍ୟ ଧରି,
ପୂଜା ତବ, ଆବ୍ଧ ହେ, ସାରିବ ଆଚରି ।
ହୃଦୟୁ ବିସାରେ ମୋରେ ବନ୍ଧୁ ପରିସରେ
ରଖିଥାଅ ଅନୁଦିନ ଶ୍ରୀଚରଣ ତଳେ ।

# ମୁଣ୍ଡବଳି

ଭୋଇ ବଂଶ ନୃପେ — ହଟାଇ, ଫିରିଙ୍ଗି
ଛଣିଲେ ଖୋରଧା ରାଜ୍ୟ,
ଗୋରା କର୍ମଚାରୀ — ସ୍ଥାପି, ନରାମଦେ
ନିର୍ବାହିଲେ ରାଜକାର୍ଯ୍ୟ ।

କେ ଶିର ନୁଆଇଁ — ମାନିଲା ଶାସନ,
କର ଗଣିଦେଲା କେତେ,
କେବଳ ପାଇକେ — କହିଲେ "ଲଢ଼ିବୁ
ମୁଣ୍ଡ ଗଲାଯାଏ ଦେବୁ ।"

ଖୋରଧା ବକ୍ସି — ବୀର ଜଗବନ୍ଧୁ
ହାରି ଯାଇଛନ୍ତି ରଣେ,
ନିଶଙ୍କେ ଫିରିଙ୍ଗି — ସୃଜି ଲୀଳାଭୂମି,
ରହନ୍ତି ଉଦ୍ଧତ ମନେ ।

ତଥାପି ତାଙ୍କର — ଗଡ଼େ ନ ପାରନ୍ତି
ସହଜେ ପକାଇ ପାଦ,
ତା ଦଳବେହେରା — ପ୍ରଜାପୁଞ୍ଜ ବଳେ
ଉଠନ୍ତି ଘୋର ପ୍ରମାଦ ।

ବାହୁ ଯୁଗେ ଯେତେ ଗୌରବ ତାଙ୍କର,
ତେତିକ ଦୟା ହୃଦୟେ;
ନିଜ ମୁଣ୍ଡ ଦେଇ ହରାଇବେ, ତଥା
ତାଙ୍କୁ ନ ତେଜିବେ ଭୟେ ।
ଅସହ୍ୟ ମଣିଲେ ଫିରଙ୍ଗି ଶାସକ,
କହିଲେ, "ଲାଗିଛି ନାଟ,
ତାଙ୍କୁ ତାକୁ ମୋ ତଡ଼ିବା ନିଶ୍ଚିତ",
ପେଷିଲେ ବିପୁଳ ଥାଟ ।
ଦୁଇ ଥାଟେ ଯୁଦ୍ଧ ଲାଗିଲା ବିଷମ,
ତିଳେ କାର ନାହିଁ ହେଳା;
ଦୀର୍ଘ ସାତ ଦିନେ ସରିଲା ସମର
ହାରିଲେ ଦଳ ବେହେରା ।
ତାଙ୍କୁ ମେଳିଣି ମାଗି ସେ ପଶିଲେ
ଗିରି ବନେ ଯାଇ ଆହା !
ନ ଖାଆନ୍ତି, କାହିଁ ଯାପନ୍ତି ଯାମିନୀ,
କେ ଜାଣେ, ପାଇକନାହା ।
ତଥାପି ତାଙ୍କ ଗଡ଼େ ବାଳ ବୃଦ୍ଧ
ନିତି ସୁମରନ୍ତି ନାମ,
ଶୁଣି ଶୁଣି ଦୂରେ ବଧିର ହୁଅଇ
ଫିରିଙ୍ଗି ଶାସକ କାନ ।
କହିଲେ ତହୁଁ ସେ, "ସତ୍ୱ ଯେବେ ତାର
ମର୍ତ୍ତ୍ୟ ମୁଁ ନ କରେ ଲୋପ,
ଶାସନ ତ ରାଜ୍ୟେ ହୋଇବ ଅଚଳ,
ଦହିବ ମୋତେ ମୋ କୋପ ।"

ସମଗ୍ର ଖୋରଧା ରାଜ୍ୟେ ପ୍ରଚାରିଲା,
"ଦୁଷ୍ଟ ଦଳବେହରାର
ମସ୍ତକ ଯେ ଛେଦି ଆଣିବ, ପାଇବ
ସୁନାଥାଳ ପୁରସ୍କାର ।"
ଘୋଷେ ହରକମିଲେ ଖଣ୍ଡାୟତ ସାରେ
ଗଡ଼ ଚଢେ, ଗ୍ରାମୁ ଗ୍ରାମେ;
ଖଣ୍ଡାୟତ-ମାନ ଯେ ରଖିଛୁ, ତାଙ୍କୁ
ମରାଇ ନଦେବେ ପ୍ରାଣେ ।
ଲୁଲନ୍ତ ବଧିକ ଗୋଇନ୍ଦା ଘାତକ
ଧନର କେତେକ ମହିମା !
ମୁଣ୍ଡ ଯେବେ କାଟି ଆଣିବେ, ରହିବ-
ନାହିଁ ସୌଭାଗ୍ୟର ସୀମା ।
ଲାଗେ ଖଣ୍ଡାୟୁଦ୍ଧ କେତେ ପଡା ହେଲେ,
କେତେ ଯେ ହୁଅନ୍ତି ଖୁଣ,
ପାଇକ ଗୋଇନ୍ଦା ଲଢ଼ି ହୋଇଯାନ୍ତି
ଶୁଖାଶୁଖି ପୂର୍ବ ରଣ ।
ଦଳବେହରାଙ୍କ ଛାଇ ସେ ଘାତକେ
ଖୋଜି ସେ ପାଆନ୍ତି ନାହିଁ,
ସୁନାଥାଳ ବୃଥା ଯିବକି ରାଇଜେ
ତିନି ଲକ୍ଷ ପ୍ରଜା ଥାଇ ?
ଦିନେ ବନପ୍ରାନ୍ତେ ଚମର୍ଷ ପଥିକ
କହେ ବନବାସୀ ଭେଟି,
"ତାପସଙ୍କ ଯିବାର ପଥ କି ଜାଣିଛ?
କହ ମୁଁ ଯିବଇଁ ସେଥି ।

କୈବର୍ତ୍ତ ଜାତ ମୋ, ବୁଡ଼ିଲା ନଉକା
ଅତଳ ଚିଲିକା-ଗର୍ଭେ,
ଗ୍ରାମେ ଘର ପୋଡ଼ି ଚାଲିଗଲା ବାସ;
ମରେ ମୁଁ ଦଇବଦଣ୍ଡେ ।
ତାପଙ୍ଗ ଗଡର ଦଳବେହେରାଙ୍କୁ
ମାଗି କେ ନୋହୁଛି ବ୍ୟର୍ଥ;
ମୁଁ ଯିବି, କହିବି ମୋ ଦୁଃଖ ଗୁଚାଇ
ଲେଉଟିବି ଧରି ଅର୍ଥ ।”
ଶୁଣି ବନବାସୀ ସେଥି ଅଟ୍ଟହାସ
କହିଲେ, ଆସ ମୋ ସାଥି,
ଅର୍ଥ ଯହିଁ ନିଶ୍ଚେ ମିଳିବ, ନିଜେ ମୁଁ
ନେଇ ଯିବି ବାଟ କାଟି ।”
ଆଗେ ବନବାସୀ ଚାଲନ୍ତି, କୈବର୍ତ୍ତ
ଅନୁସରେ ଭୁଲି କ୍ଲେଶ;
ସକାଳୁ ମଧ୍ୟାହ୍ନ ହୋଇଗଲା ଯହୁଁ,
ପଥଶ୍ରମ ହେଲା ଶେଷ ।
କାର୍ଯ୍ୟାଳୟେ ବସି ଫିରିଙ୍ଗି ଶାସକ
ବିବ୍ରତ ଖୋରଧା ଗଡେ;
ପଳାୟିତ ଦଳ- ବେହେରା ନ ମିଳେ,
କପାଳ ଠୁକନ୍ତି କରେ ।
ଟେକି ମୁଣ୍ଡ, ଚାହିଁ ଦେଖିଲେ ଅଚାହ୍ନା
ଜନ କେ ହୋଇଛି ଠିଆ,
ଦାଢ଼ି ନଖ ବଢ଼ି ବନବାସୀ ଜଣେ;
ଛୁଟି ଉଠିଲେ ଥରେ ହୁଆ ।

ପୁଚ୍ଛିଲେ, "କି କାର୍ଯ୍ୟେ    ଆସିଛ, ଜଙ୍ଗଲୀ ?"
ଉତ୍ତର ଶୁଣିଲେ ଭୂପ—
"ତାପଙ୍ଗର ଦଳ-    ବେଢ଼େଇ ମୁଣ୍ଡକୁ
ସୁନାଥାଳ ଦେବ ପଣ ?
ମୁହିଁ ସେହି ଦଳ-    ବେଢ଼େଇ, ମୋତେ ଏ
କୈବର୍ତ୍ତ ଆଣିଛୁ ଧରି;
ବଡ଼ ଦୁଃଖୀ ଜନ,    ବଢ଼ାଅ ତା ଧନ,
ନେଅ ମୋର ମୁଣ୍ଡ ବଳି ।"
ଶୁଣି କର୍ମବୀର    ପଡ଼ିଗଲେ ଶେତା
ପୋତିଲେ ଦୁର୍ଦ୍ଧର୍ଷ ମଥା;
କାର୍ଯ୍ୟାଳୟୁ ସାରି    ନୀରବ ନିସ୍ତବ୍ଧ
ମୁଖୁ କା ନ ଫୁଟୁରେ କଥା ।



# ଭିକ୍ଷା ଦେବେ କାହୁଁ ?

ବହୁ ଶତ ବର୍ଷ ପୂର୍ବେ      ପୂଣ୍ୟ ଦେବାର୍ଚ୍ଚନେ
ରତ ଥିଲେ ଉତ୍କଳ-ନୃପତି;
ଘଣ୍ଟା ବାଦ୍ୟ ସ୍ତୋତ୍ର ବନ୍ଦୀ      ବନ୍ଦନା ଛନ୍ଦରେ
ଚତୁର୍ଦ୍ଦିଗୁ ମିଶେ ସ୍ତୁତିଧ୍ୱନି ।
ଦ୍ୱାରେ କରଯୋଡ଼ି ଭକ୍ତ      ଶଙ୍କିତ ଭିକ୍ଷାର୍ଥୀ;
ଦେବାର୍ଚ୍ଚନେ ହୁଏ ସିନା ଡେରୀ,
ଦେବତା ଦର୍ଶନ ନୁହେ      କାମ୍ୟ ତାର ଲବେ,
ଆସିଛି ସେ ଭିକ୍ଷା ନେବ ମାଗି ।
ଯଥାକାଳେ ଦେବାଳୟେ      ପ୍ରଣମିଲ୍ଲ ସେଳ,
ନରମଣି କଲେ ପ୍ରଣିପାତ;
କହିଲେ, "ଭିକ୍ଷା ମୋ, ଭର      ଏ ଧନ ଭଣ୍ଡାର
ଧନରତ୍ନେ, ହେ ଜଗତନାଥ ।"
ସାରି ନମସ୍କାର ନୃପ      ଉଠିଲେ ଭୂତଳୁ
ଫେରାଇଲେ ମୁଖ ଯିବାପାଇଁ;
ଦେଖନ୍ତି ଭିକାରି ଯାଏ      ବାହୁଡ଼ି ମନ୍ଦରୁ,
ନ ଭୁଟିଲେ ଦେଖୁ ନରସାଇଁ ।
ସନ୍ଧାନ କରନ୍ତି ତାଙ୍କ      ଭିକ୍ଷା ଦେବା ଲାଗି
ମନ ତୋଷି ଦେବାର୍ଚ୍ଚନ ଅନ୍ତେ;
ଭିକ୍ଷୁକ ନ ଥିଲେ ଭିକ୍ଷା      ଅର୍ପିବେ କା କରେ ?
ଧର୍ମ ରକ୍ଷା ହୋଇବ କେମନ୍ତେ ?
ଧାଇଲେ ଭିକ୍ଷୁକେ ତହୁଁ      ଚହୁଁ ନରଗଣ,
ପଚାରିଲେ, "ଯାଅ କହାଁ ଫେରି ?

ଯା ମାଗିବ ମାଗ, ଭିକ୍ଷା          ଦେବି ମୁଁ ଅଗ୍ରତେ
ଏ ମୁହୂର୍ତ୍ତେ, ନାହିଁ ତିଳେ ଡେରି ।”
ଶୁଣିଲା ଭିକ୍ଷାର୍ଥୀ କର୍ଣ୍ଣେ,          ଯୋଡ଼ି ବେନି କର,
ବଖାଣିଲା ଗମ୍ଭୀରେ ବଚନ,
“କୋଟିପତି ପାଶେ ଯିବା          ଆସିଥିଲି ଆଗେ
କରିବାକୁ ସାର୍ଥକ ଜୀବନ ।
ବଡ଼ ମୋ କୁଟୁମ୍ବ, ତହୁଁ          ଧନ ଭିକ୍ଷା ଲାଗି
ଲୋଡ଼ିଥିଲି ଶ୍ରୀପ୍ରଭୁଙ୍କ ଭେଟ;
କି ଲାଭ ଭିକ୍ଷୁକ ହାତୁଁ          ଘେନି ଭିକ୍ଷା ଦାନ ?
ଜାତି ଯିବ, ନ ପୂରିବ ପେଟ ।
ଶୁଣିଲେ ନୃମଣି, ଅର୍ଥ          ନ ପାରିଲେ ବୁଝି;
ଡାକିଲେ, ବାତୁଳ ସେ ଜନ,
ତେବେ, ବଧି ରକ୍ଷା ପାଇଁ          ଆଦେଶିଲେ, “ଭିକ୍ଷା
ପାତି ହାତ, ଘେନ ଭିକ୍ଷା ଧନ ।”
ପ୍ରସାରିଲା ନାହିଁ କର          ଦରିଦ୍ର ଭିକ୍ଷାରୀ;
ପୁଣି ଥରେ କହିଲା ବଖାଣି,
“ଭିକ୍ଷାର୍ଥୀ ହାତୁ ତ ଭିକ୍ଷା          ନେବା ନୁହେଁ ଧର୍ମ,
ବୁଝୁଥିବେ ପ୍ରଭୁ ମହାଜ୍ଞାନୀ ।
ତୁମ୍ଭ ପୂଜ ନଜେ ଭିକ୍ଷା          ମାଗନ୍ତି ମହିମା,
ମୋତେ ଭିକ୍ଷା ଦେବେ ପୁଣି କାହୁଁ ?
ଯେ ଦେବେ ପ୍ରଭୁଙ୍କୁ ଧନ          ତାଙ୍କୁ ନବେଦିଲେ,
ମୋ ମାନତା ନ ରହିବ ଆଉ ।”

# ମା ନା ଦେଶ ?

ଆକ୍ରମିଲେ ଆସି କାହୁଁ ଶତ୍ରୁ ସେନା ଶତ,
ସମଗ୍ର ଜାପାନ ରାଜ୍ୟ ପଡ଼ିଲା ସଙ୍କଟ ।
କେ କହିଲା, "ବୁଡ଼ିଯିବ ଦେଶର ସମ୍ମାନ;"
କେହୁ କହେ, "ସ୍ୱାଧୀନତା ନାଶ ଗଲା ଜାଣ;"
"କି କଲେ ରକ୍ଷିବ ରାଜ୍ୟ ?" କେ ପୁଚ୍ଛିଲା ଦୁଃଖେ;
"ଆହା ମୋର ମାତୃଭୂମି !" ଡାକିଲା ଆଉ କେ ।
ସାରା ସେ ଜାପାନ ଦ୍ୱୀପେ ପଡ଼େ ହାହାକାର,
ରାଜ୍ୟରକ୍ଷା ଲାଗି ଯୁଦ୍ଧେ ସକଳେ ତିଆର ।
ତେବେ, ଜଣିଗଲା ବୈରୀ, ପଶିଲା ରାଇଜେ,
ଆପଦେ ଥରିଲେ ନୃପ ସିଂହାସନେ ନିଜେ ।
ପିନ୍ଧି ବର୍ମ ଆପେ, ଧରି କରବାଳ କରେ,
ସାମାନ୍ୟ ସୈନିକ ବେଶେ ଗମିଲେ ସମରେ ।
ଯତ୍ନେ ଗୋଡ଼ାଇଲେ ଯେତେ ରାଇଜ ସେନାମା,
ଶତ ଶତ୍ରୁ ମୁଣ୍ଡ ହେଲେ ଗୁଳିଗଲେ ହାଣି ।
ତଥାପି ଅସଂଖ୍ୟ ଅରି ଆସିଲେ ତ ମାଡ଼ି,
ରଣଭୂମେ ଠିଆ ହେଲେ ଶତ ଲକ୍ଷ ଧାଡ଼ି ।
ଦେଖିଲେ ଜାପାନ ଭୂପ ବିଚାରିଲେ ମନେ,
"ସତେ ମୁଁ ଏ ଶତ୍ରୁ ନାଶି ଜୟୀ ହେବି ରଣେ !"
ସାରା ରାଜ୍ୟେ ପ୍ରଚାରିଲେ ଘୋଷଣା ସତ୍ୱର —
"ପ୍ରତି ଯୁବା ଯୁଦ୍ଧଭୂମେ କରିବ ସମର;
କେବଳ ଘରକେ ଜଣେ ରହିବ ନ ଯାଇ,
ଘରର ରମଣୀଗଣେ ସାହା ହେବାପାଇଁ;
ବାକି ଯେତେ ଯୁବା ଦେଶେ ନ ରହିବେ ଘରେ,
ତେବେ ରାଜ୍ୟରକ୍ଷା ସିନା ହେବ ମହୀତଳେ ।"

ଶୁଣି ରାଜଆଜ୍ଞା ରୁଣ୍ଡ ହେଲେ ରଣାଙ୍ଗନେ
ଲକ୍ଷ ଯୁବା, ନମି ଜନ୍ମଭୂମିର ଚରଣେ ।
ସମଗ୍ର ଜାପାନେ ବୀରପଣେ ଗଲେ ଅଶ୍ୱ
ବନ ପରବତ ନଦୀ, ଢକମ୍ପିଲା ଅର ।
ଥିଲା ଏକ ଘରେ ଯୁବା ବୟସେ ଅଠର;
ସମରେ ନ ଯାଇ ତାର ବ୍ୟଥିତ ଅନ୍ତର ।
ବୁଢ଼ୀ ମାଆ ରାଗ ତାର ଭୁଲାଇବା ପାଇଁ
ସେ ଏକା ପୁରୁଷ ଘରର, ଜଣେ ଆଉ ନାହିଁ ।
ରାଜ ଆଜ୍ଞା ମାନ, ପୁଅ ରହିଅଛି ଘରେ;
ଯାଇ ବୁଢ଼ୀ ପାଶେ ତାକୁ କହିଲା ଆଦରେ—
"ରାଜ୍ୟ ଲାଗି ନ ଯୁଝିଲେ, ଏକଇର ବଳା,
ବାପା ଅଜା ମୁହେଁ ସିନା ଲଗାଇବୁ କଳା;
ଯାଇ ମୁଁ ଦେଖିବ, ଧନ, କପଣି ନୟନେ !
ମୁହିଁ ଚାଲିଗଲେ, ତୋତେ କେ ରଖିବ କ୍ଷଣେ ?
ବୀରବେଶେ ଯିବୁ, ବାବୁ, ଯୁଦ୍ଧଭୂମେ ଚାଲି,
ନାଶିବୁ ବଇରୀ, ରାଜ୍ୟ ରକ୍ଷିଯିବୁ ତାରି ।"
କହି ବୁଢ଼ୀ ପୁଏ ଧରି ଚୁମ୍ବିଲା କପୋଳ,
ମାଗିନେଲା ନେଇସାରେ ମେଲାଣି ସତ୍ୱର ।
ଖଣ୍ଡାଧାରେ ଦେଲା ତହୁଁ କାଟି ନିଜ ମୁଣ୍ଡ;
"ଜିଣିନେ ଯାଅ ତୁ ଯୁଦ୍ଧେ" ଚଳୁ କହେ ତୁଣ୍ଡ ।
ମାଆ ତୁଣ୍ଡୁ ଆଉ ପଦେ ନ ଶୁଣିଲା ପୁଅ,
ଦୁଇ ନେତ୍ରୁ ବହିଗଲା ଦୁଇ ଧାର ଲୁହ ।
ଚାଲିଗଲା ଘରୁ, ଶତ୍ରୁ ସଂହାରିଲା ରଣେ;
ରାଜ ଆଜ୍ଞା ରୋଧି ତାକୁ ନ ପାରିଲା କ୍ଷଣେ ।

---

# * ଅମର ବାଳକ

ଜଳଆସେ ଡରି, ସବେ ଗଲେଣି ପଳାଇ,
ଏକାକିଆ ପିଲା ହୋଇଅଛି ଠିଆ;
ରଣ ନିଦାରୁଣ ଛଳ ପ୍ରକାଶି ବିକଟ,
ଶବରାଶି ପରେ ଜଳୁଅଛି ନିଆଁ ।

ତେବେ ହେଲେ ପିଲା ସ୍ଥିର ସହାସ୍ୟ ବଦନେ
ଠିଆଟି ହୋଇଛି, ନ ମାନି ଅନଳ,
ବୀର-ବଂଶଭବ ତାର ଧମନୀ-ଶୋଣିତ,
ପିଲା ସତ, ରୂପ ଗର୍ବ-ସମଧୂର !

---

* ଆଫ୍ରିକାର ନାଇଲ ନଦୀରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ୧୭୯୮ ସାଲରେ ଯୁଦ୍ଧ ହୋଇଥିଲା । ସେ ସମୟରେ ଗୋଟିଏ ଫରାସୀ ଯୁଦ୍ଧ ଜାହାଜର ଅଧ୍ୟକ୍ଷ ନିଜର ଦଶ ବର୍ଷ ବୟସର ପୁଅଟିକୁ ନେଇ ସେ ଜାହାଜରେ ଥିଲେ । ତାହାର ନାମ କାସାବାଂକା । ଜାହାଜ ଅଧ୍ୟକ୍ଷ କାସାବାଂକାକୁ କହିଲେ, "ମୁଁ ଫେରିବା ପର୍ଯ୍ୟନ୍ତ ତୁ ଏହି ସ୍ଥାନରେ ଠିଆ ହୋଇଥା ।" ଏହା କହି, ସେ ପୁଅକୁ ଜାହାଜର ଗୋଟାଏ ସ୍ଥାନରେ ଠିଆ କରାଇଦେଇ, ନିଜେ ଅନ୍ୟ ସ୍ଥାନକୁ ଚାଲିଗଲେ । ମାତ୍ର ସେ ଅଳ୍ପ ସମୟ ପରେ ଯୁଦ୍ଧରେ ମରିଗଲେ । ବାପା ଆସିବେ ବୋଲି କାସାବାଂକା ସେହି ଏକ ସ୍ଥାନରେ ଅପେକ୍ଷା କରି ଠିଆ ହୋଇ ରହିଲା । ଏ ସମୟରେ ଜାହାଜରେ ନିଆଁ ଲାଗିଲା । ସେହି ବିଷୟ ଏ ପଦ୍ୟରେ ବର୍ଣ୍ଣନା କରାଯାଇଛି ।

ଆଗୁ ଆଗ ଆସେ ବହ୍ନି; ପିତା ଅନୁମତି
ନ ପାଇ, ଆସ୍ଥାନୁ ନ ଘୁଞ୍ଚେ ପିଲଟି;
ବାପା ତ ସେ ଶୋଇଛନ୍ତି ମରଣ-ତଳପେ,
ଦୂରୁ ତାର ଏବେ ନ ଶୁଣନ୍ତି ପାଟି ।

ଘୁ ରୁ ସ୍ୱରେ ପୁଚ୍ଛେ ଟାଣି, "କହ, ବାପା, କହ,
ରହିବା ମୋ ଏଥି ଲୋଡ଼ା କି ହେ ଆଉ ?"
ନ ଜାଣେ କଣ୍ଠରେ ପିଲା ବାପାଙ୍କ କି ଦଶା,
ଏତେ ଡାକ ତାର ଶୁଣିବେ ସେ କାହୁଁ ?

"କହ, ବାପା, କେତେ," ପୁଣି ପୁଛିଲା ପିଲଟି
"ଯାଇଣ ପାରିବି ଏଥୁ ଏବେ ମୁଁ ହିଁ ?"
ରଣ-ତୋପମାନ, ଆହା, ଦିଅନ୍ତି ଉତ୍ତର
ଜଳି ଆସେ ବହ୍ନି ବେଗୁ ବେଗ ହୋଇ ।

କପାଳେ ଲାଗିଲା ତାର ପ୍ରଖର ସେ ଶ୍ୱାସ,
ମୁକୁଳିତ କେଶ ପରଶିଲା ଖରେ;
ସେ ମୃତ୍ୟୁ ନିର୍ଜନ ପୀଠୁଁ ଅନାଇଲା ପିଲା
ନିରାଶେ, ତଥାପି ସାହସ ଅନ୍ତରେ ।

ଆଉ ଥରେ ଶୁଣି ଉଚ୍ଚେ ଡାକିଲା ସେ ଘାଇ,
"କହନ୍ତୁ କି, ବାପା, ରହିବି ମୁଁ ଏଥି ?"
ଯେତେବେଳେ ରସି ପାଲେ ଉଜ୍ଜ୍ୱଳି ଭେଦି
ବେଗୁ ବେଗ ବହ୍ନି ଆସୁଥାଏ ମାଡି ।

ଶ୍ୟାମ ଶୋଭାବନେ କ୍ଷଣେ    ଜଳିଲା ତରଣୀ
  ଜଳିଲା ଗଗନେ ତରଣୀ-ପତାକା;
ସମୀରଣେ ରଣଧ୍ୱଜା    ସମ ସେ ଅନଳ
  ଯୋଟି ପିଲଟିରେ ବହ୍ନିତଳ ଶିଖା ।

ନିମିଷେ ଶୁଭିଲା ତହୁଁ    ଘନ ବଜ୍ର ନାଦ,
  ପିଲ୍ଲଟି ସେ-ଆହା, କାହିଁକି ପିଲଟି ?
ଯେ ପବନେ ଉଡ଼ିଗଲା    ଦଗ୍ଧ ଖଣ୍ଡମାନ
  ପୁଚ୍ଛ ତାରେ, ଏକା କହିବ ସେହିଟି ।

ଉଡ଼ିଗଲେ ସ୍ତମ୍ଭ, କାଠ,    ତରଣୀ-ନିଶାଣ,
  ଦଗ୍ଧ-ବକ୍ଷେ ଯେତେ ଅତୁଳନ ଶିଖା;
ନିଠୁର ଦହନେ ମଲା    ପୋଡ଼ି ସେ ପିଲଟି,
  ଏ ମରଣେ, ଆହା, ଦେବ କେ ତା ସର ?

## * ମର୍ତ୍ତ୍ୟ ନାହିଁଛୁ ଏକା

ଦୂର ପରବାସେ ଚାଲି ଯିବେ ଭାଇ,
ବରଜ କୁଟୀର ସୋହାଗ ଶିଖି;
ସେ ଲାଗି ସଙ୍ଗରେ ଆସିଛୁ ପିଲାଟି,
ଅଧବାଟେ ଦେବ ମେଲାଣି ବୋଲି ।
ବନ ଝାଲି କେତେ ପାରି ହୋଇ ଆସି,
ତରୁ ତଳେ ବସି ରହିଲେ ବେନ,
ସେହିଠାରେ ଯିବେ ଦୁହେଁ ଦୁଇ ଆଡ଼େ,
କେତେ ଯୁଗ ଲାଗି ମେଲାଣି ଦେନ ।

"ଦେଖୁଛୁ ତ, ବାବୁ ବନ ଗିରି ଯୋଡ଼ି
କି ଘୋର ବରଷା ଆସୁଛି ମାଡ଼ି,
ଯାଅ ତୁ ଭୁଇଁରେ କେତେ ବାଟ ଯିବୁ,
ମୁଁ ତ ଏବେକଷଣି ଯିବଇଁ ଚାଲି ।
ଝାଲ ବଣ ବାଟେ ଦେଖି ଚାହିଁ ଯିବୁ,
ନ ଛାଡ଼ିବୁ ପାଣି, ଟେକିବୁ ଛତା,
ବସି ଉଠି କାହିଁ ହେଲା ନ କରିବୁ,
କଲେ ହେଲା ହୋଇଯିବ ରେ ରାତି ।

---

* ରଣପୁର ଗଡ଼ଜାତ ରାଜ୍ୟ ଥିଲା, ଏବେ ପୁରୀ ଜିଲାର ଅନ୍ତର୍ଗତ ହୋଇଛି । ରଣପୁର, କବିଙ୍କ ଜନ୍ମସ୍ଥାନ ବାଣପୁରକୁ ଲାଗିଛି । ମଣିନାଗ ପାହାଡ଼ ତଳେ ରଣପୁର ଗଡ଼ । ମଦାଗିଣୀ ନଈ ରଣପୁର ଗଡ଼ ପାଖେ । ତାହା ଦୟା ନଦୀରେ ପଡ଼ି ଚିଲିକାକୁ ଯାଇଛି ।

ଭୋକ କଲେ ବାଟେ    ଖାଇବୁ, ବାବୁ ରେ
ଶୋଷ କଲେ ପାଣି ପିଇବୁ ନଳ,
ଦୁହେଁ ସିନା ଥିଲେ    ଆସି ହସି ଖେଳ,
ଏକା ତୁହି ଚାଲି ପାରିବୁ ଟି କ ?"

ନିଜ ପିନ୍ଧା ଖଣ୍ଡି    ଫାଲିଟି ଭାଇଟି
ଭାଇରେ ବସନ ଦେଲା ପିନ୍ଧାଇ,
ବାଟେ ଚାଲି ବନେ    ମେଘ ବରଷିବ
ଦେଲା ଭାଇ ହାତେ ଛତିଟି ନେଇ ।
ନିଜ ବାଟ ଖର୍ଚ୍ଚ    ଖୋଣ୍ଡି ସେ କଢ଼ିଲା,
ଦେଇ ଭାଇ ହାତେ କଉଡ଼ି ଗଣି,
"ଗାଆଁରୁ ଗାଆଁକୁ    ପନ୍ଥି ଯାତ୍ରୀ ମିଳେ
ଖଜା ପିଠା ମୁଆଁ ଖାଇବୁ କିଣି ।
ବୋଉକୁ କହିବୁ    ଭାଇ ଗଲେ ସୁଖେ
ସାଥି ସାଙ୍ଗ ବାଟେ ମିଳିଲେ କେତେ,
ଖରା ବରଷା ତ    ନ ଥିଲା ଦେଖିଛୁ
ବାଟ ଶ୍ରମ ହୋଇ ନ ଥିବ ପ୍ରତେ ।
କହିବୁ ମୋ ଲାଗି    ଭାବିବ ନାହିଁଟି,
କାନ୍ଦଲେ, ବାବୁ ରେ, କରିବୁ ତୁନି,
ରାତି ହେଲେ ସାଇ    କୋଳେ ଶୋଉଥିବୁ
ବଞ୍ଚିଛୁ ପରା ସେ ଆମରି ଧେନୁ ।
ଘରେ ଗଲେ ସୁଖେ    ଖେଳିବୁ ବୁଲିବୁ
ମୋ କଥା ମନେ ତୁ ହେଜିବୁ ନାହିଁ,
ଯାଉଛି ସିନାରେ    ଚାଲି ଆଜି ବାବୁ,
ମାସେ ନୋହୁ ଫେରି ଆସିବି ମୁହିଁ ।

ମଲ୍ଲୀ ଗଛଟିରେ          ଦେଉଥିବୁ ପାଣି,
ଶୁଆଟିକି ଦୁଧ ଦେବୁ ରେ ନିତି;
ହେଳା ନ କରିବୁ          ମୁଁ ଫେରି ଆସିଲେ
ଆଣିଥିବି ଭଲ ପଞ୍ଜୁରି ଗୋଟି ।
ଯାଅ ଏବେ ଯାଅ          ଠିଆ ମୁଁ ହୋଇଛି,
ସେ ବାଙ୍କ ସଡ଼କ ହେଲେ ଭୁ ପାରି,
ଆଜ୍ଞ ଯେବେ ତୋରେ          ନ ଦେଖି ପାରିବ
ମୋ ବାଟେ, ବାବୁ ରେ ଯିବ ମୁଁ ଚାଲି ।"

ଗଲା ଭାଇ ପାଖୁଁ          ଠିଆ ସେ ହୋଇଛି,
ଭାଇ ଲୁଚିଗଲା ସଡ଼କ ବାଙ୍କେ,
ପୋଛି ଟପ ଟପ          ନୟନୁଁ ଲୋତକ,
ଧୀରେ ପାଦ ଚାଳି ଚାଲିଲା ଦୁଃଖେ ।
ବରଷା ବରଷି          ମାଡ଼ି ଯେ ଆସିଲା,
ଛତା ନାହିଁ ହାତେ ତିନ୍ତିଲା ତନୁ;
ସାହା ସାଥି ନାହିଁ,          ଶୋକ ଯେ କରୁଛି,
ଭାଇ କଥା ଭୁଲି ନ ପାରେ ମନୁ ।

"ଏକାଠିରେ କେବେ          ଛାଡ଼ି ତ ନ ଥିଲି
ଘରୁ ନୋହିଥିଲୁ ବାହାର ଢଟେ,
ଏ ପାଣି-ପବନେ          ଝଲ-ବଣ-ବାଟେ
ଚାଲୁଥିବୁ ବାବୁ, କି ଶ୍ୱାନମାନେ !
କାନ୍ଦିଲେ, 'କାନ୍ଦନା'          କିଏ କହିବ ରେ,
ଲୁହ ପୋଛିଦେବ ଭୁନଟି କିଏ ?
ମାଆ ମଣିନାଗ,          ମୋ ଦୁଃଖୀ ଭାଇରେ
ସବୁ ଶୁଭେ ଆଜ ନିଅ ଗୋ ଚାଳି ।"

ଏକାଣ୍ଟିରେ ବାଟେ ଭାବେ ଏତେ ମନେ
ମିଳିଲା ସଙ୍ଗେ ସେ ପ୍ରବାସ ବାସେ,
ମାଆ ଭାଇ, ବେନ ଚରଣ ସଙ୍ଗାଳ
ମୁରୁଛି, ଏକାଟି ରହିବ ମାସେ ।
ମାସକ ଅନ୍ତରେ ଫେରିବ ଘରେ ସେ,
ଭାଇରେ ଦୋସର ଦେଖିବ ଯାଇ,
କେତେ କବା ନେବ ଭଲ ଦ୍ରବ୍ୟ ବାଛି,
ପଞ୍ଜୁରୀ ତ ନେବ ଶୁଆଟି ପାଇଁ ।

ଭାଇଟି ତାର ସେ ବାଟ ଚାଲି ଏଣେ,
ଆସୁଛି ବରଷା ବତାସ ସଙ୍ଗ,
ଛତାଟି ଧରିଛି ହାତେ ସେହିପରି,
ଭୁମେ ମାନ୍ତ ଥରେ ନ ଢଏ ଫେରି ।
କଉଡ଼ି ମୁଠିଟି ଖୋସି ରଖିଅଛି
ଭୋକେ ଶୋଷେ ତାର ଜଳୁଛି ପେଟ,
ଗାଆଁରୁ ଗାଆଁକୁ ଖଜା ପିଠା କେତେ
ଦେଖେ, କିଣିବାକୁ ନ ଯାଏ ହାତ ।
ବସି ଉଠିଯାଏ ବଣ-ଢାଲ-ବାଟେ,
ସାହା ସାଥି ଜଣେ ନାହିଁଟି କେହି,
କେତେ ବାଟ ତାର ଯିବାକୁ ଅଛି ତ
ଅନ୍ଧାର ଘୋଟି ସେ ଆସିଲା ସଞ୍ଜ ।
ସାଇଁ ସାଇଁ ବହି— ଆସିଲା ପବନ
ଟପ ଟପ ପାଣି ବରଷେ ଟାଣେ,
ବିଜୁଳି ଚମକ, ଘଡ଼ଘଡ଼ ନାଦେ
ବଣଜନ୍ତୁ ନାହିଁ ବୁଲନ୍ତି ବଣେ ।

କେତେ ବଡ଼ ଗିରି                    ପାରି ହେଲା ପିଲା,
        ଭାଇ କଥା ମନେ ହେଉଛି ଭଲ,—
"ଏକାଟିରେ ମୁହିଁ                    ଚାଲି ଯେ ଆଇଲି
        କେତେ ଆହା ନୋହୁଥିବେ ସେ ଘାରି।
ପରବାସେ ଯାଇ                    କେଉଁ ଗଛ ମୂଳେ
        ବସିଥିବେ ଦୁଃଖେ ମଥାଟି ପୋତି,
ଆହା ବୋଲିବାକୁ                    କାହିଁ କେ ନ ଥିବ,
        ପାଇବ କପରି ଏ କାଳ ରାତି ?"
ସେ କାଳ ରାତି ଯେ                    ପାଉନାହିଁ ତାରି,
        ବାଟ ବଣ କଟୁଛି ନୋହୁଛି ବାରି,
ଯହୁଁ ଦନ ବଳ                    ହେଉଛି ଅନ୍ଧାର,
        ଯେତେ ଦୂର ଦେଖୁ ଯାଉଛି ଚାଲି।
ନଈ ବହିଯାଏ                    କଳ କଳ ନାଦେ
        ପେଲିନିଏ କେତେ ପଥର କାଠ,
ଆଖି ବୁଜି ପିଲା                    ପଡ଼ିଲା ତ ଡେଇଁ
        ଆର କୂଳେ ପଶି ମିଳିବ ବାଟ।

ପରବାସେ ଭାଇ                    ଗଣୁଅଛି ଦନ
        ମାଦକ କଣ୍ଠ ତ ପୂରିଲା ଆସି;
ରାତି ହେଲେ ତାକୁ                    ନଦ ଯେ ନୋହୁଛି,
        ଦିନ ବେଳେ ଥିରେ ନପାରେ ବସି।
କେତେ ନୂଆ ଦ୍ରବ୍ୟ                    ବାନ୍ଧୁଛି ସଙ୍ଗତେ,
        ପଞ୍ଜୁରିଟି ହାତେ ଅଛଇ ଧରି,
ଯେଉଁ ଝାଲ ବଣ                    ବାଟେ, ଶୁଣି ଭାଇ
        ଛୋଟା ଗଛ ତଳ ହୋଇଲା ପାରି।

ଘରେ ଆସି ଦେଖେ ଶୁଆ ନାହିଁ ଆଉ
ମଲ୍ଲୀ ଗଛ ଶୁଖି ହେଲାଣି ହାଡ଼,
'କାହିଁ ଭାଇ ମୋର' ? ପଚୁର ଦଅନ୍ତା
କଥା ନାହିଁ ଆସେ ତୁଣ୍ଡକୁ ତାର ।
ମଣିନାଗ ଗିରି ତୋଳିଛି ତା ମଥା
ମଦାଗ୍ନି ସୁଅ ତ ନୋହିଛି ଊଣା,
ରଣପୁରେ ଅଛି ସବୁ ସେହିପରି
ଭାଇଟି ତା ମର୍ତ୍ତ୍ୟେ ନାହିଁଛି ସିନା ।



# * ବୁଜିଦେଲା ଆଖି

ଉଡ଼ିଯାଉଅଛି ନଡ଼ା, ବତା ନାହିଁ ଚାଳେ,
ଏ ଯେ ବଖରାଏ ଘର ଗ୍ରାମର ବାହାରେ ।
ପାଞ୍ଚ ବର୍ଷ ଅବା କାନ୍ଥେ ନାହିଁ ଲୁଣ୍ଡା ବାଜି;
ଅଡ଼ଙ୍ଗା ଟାହାଚ ପିଣ୍ଡା ପଡ଼ିଅଛି ଭାଜି ।
ପାଖ ଗଛେ ହୁବସେ ତ ରବେ ଯେବେ ବସି,
ଭୂକମ୍ପ ହଳୁଆ ପଲ ଘର ମଧ୍ୟେ ପଶି ।
ଜନ ପ୍ରାଣୀ କେବେ ରହି ପାରନ୍ତି ସେ ଘରେ ?
ଗାଆଁ ପିଲେ ନ ମାଡ଼ନ୍ତି ପାଖ କୋକ ଡରେ ।
ସେହି ଘରେ ଶୋଇଅଛି ଭୂଇଁଶେଯ ପାତି
ସତୁରି ବରଷ ବୁଢ଼ୀ ନିର୍ଭୟେ ଏକାକି ।
ପତି ତାର ଥିଲା ଦିନେ ଗାଆଁ ଚଉକିଆ,
ସେକାଳ ଗଉରବ ମନେ କେ ଭାଳିବ କିଆଁ ?
ଦଇବ ନ କରେ ବାଛ, ଗଲା ତାକୁ ଘେନି;
ନେଇଥାନ୍ତା, ନେଲା ନାହିଁ ପତିପତ୍ନୀ ବେନି ।
ହାଣ୍ଡିଚୁଡ଼ା ହୋଇ ପୁଅ ରହୁଛି ଅଲଗା;
ଯୁବା ଯୁବକଙ୍କି କାହିଁ ବାପା ମାଆ ପରା ?

---

* ଏହା ଏକ ସତ୍ୟମୂଳକ ଘଟଣା । କବିଙ୍କ ଜନ୍ମସ୍ଥାନ ଶ୍ରୀନିବାସପୁର ଗ୍ରାମର ଏକ ପ୍ରାନ୍ତରେ ଗ୍ରାମ ଚଉକିଦାରର କୁଡ଼ିଆ ରହିଥିଲା । ଚଉକିଦାରର ମୃତ୍ୟୁପରେ, ତା ପୁଅ ମାକୁ ଛାଡ଼ି, ଭାର୍ଯ୍ୟାକୁ ଧରି ଅନ୍ୟତ୍ର ଚାଲିଗଲା । ତେଣିକି ମାଆଟି ନିଜେ ପରିଶ୍ରମ କରି, ମୁଣ୍ଡଟାଳ ଗୁଣ୍ଡରେ ମାରି ଚଳିଲା । କବି ପରେ ପ୍ରବାସରୁ ଫେରି ତାର ମୃତ୍ୟୁବର୍ତ୍ତା ଶୁଣିଲେ ।

ବାଆନ ବରଷ ଦିନେ ବୁଢ଼ୀ ଗୁଣ୍ଟିଆଣୀ
ନିଜ ଉପାର୍ଜନେ ପେଟେ ଦିଏ ଅନ୍ନ ପାଣି ।
ଶେଷେ ଗୋଡ଼ ଭାଙ୍ଗିଗଲା, ନ ପାରିଲା ଉଠି;
ଜଠରେ ପଡ଼ିଲା ନାହିଁ ନିତ୍ୟ ଅନ୍ନମୁଠି ।
ଧରିଲା ଗ୍ରହଣୀ ବ୍ୟାଧି, କଲା ଅପମାନ;
ତଳେ ବୁଢ଼ୀ ଘୁଷୁରିଲା, ନ ତୁଟଇ କାଳ ।
ମଳମୂତ୍ରେ ଘାଣ୍ଟି ସେହୁ ହେଲା ଦିନୁ ଦିନ;
ହେତିକି ଘଟେ ତା କ୍ରମେ ଆୟୁ ହେଲା କ୍ଷୀଣ ।
ଅସ୍ଥି ଚର୍ମ ବିନେ କିଛି ନ ରହିଲା ଆଉ,
ବନ୍ଧ ପଶୁ ଶୁଙ୍ଘାଉଛନ୍ତି ଯଉବନ-ବାଉ !
ଦିନେ ହବ ବୁଡ଼, ମାଡ଼ ଆସିଲା ରଜନୀ,
ନିବିଡ଼ ଅନ୍ଧାରେ ଗଲା ନିମଜ୍ଜି ଧରଣୀ ।
ଗାଆଁ ମଧ୍ୟେ ଖାଇ ପିଇ ଗାଆଁ ଯାକ ଲୋକେ
ଯେ ଯା ବାସେ ନିଦ୍ରାକୋଳେ ଶୋଇଲେ ନିଧୋକେ ।
କେତେ ପେଚକ ରବ ଦେଲେ, କେତେ ଶିବା ଶ୍ୱାନ,
ନିଦ ନ ଭାଙ୍ଗିଲା କାର, ନ ଶୁଣିଲା କାନ ।
କେତେ ଯମଦୂତ ଦାଣ୍ଡେ ବୁଲିଲେ ଅନ୍ଧାରେ,
ଗ୍ରାମେ ଜଣେ ନ ଦେଖିଲା ଘୋର ନିଶାକାଳେ ।
ଯୁବା ଝରେଖିଲା ନିଦେ ଯୁବତୀ ସ୍ୱପନ,
ଶିଶୁରେଳ ନିବାରିଲା ଜନନୀର ସ୍ତନ ।
ଏଣେ, ହୁଏ ଛଟ ପଟ ଗୁଣ୍ଟିଆଣୀ ବୁଢ଼ୀ,
ଖୋଜେ ବାଟ ପ୍ରାଣବାୟୁ ଯିବାପାଇଁ ଉଡ଼ି ।
ଡକାଉଛି ଡାକ କା'କୁ ବ୍ୟାକୁଳେ ସେ କେତେ—
ପୁଅ ବୋହୂ ସାଥୀ ନାତି ନାତୁଣୀ ତା ଯେତେ ।

ଖଣ୍ଡୁଁ ଖର ବହିଗଲା ନାକରୁ ନିଶ୍ୱାସ;
ହିକା ଉଠି ଗଲା କମ୍ପି ଅବନୀ ଆକାଶ ।
ଅଯୁତ ଯୋଜନ ଦୂରେ ଶୁଣିଥିବ ଯମ,
ଶୁଣିଲେ ଅବା ଦ୍ରବିଥିବ କଠୋର ତା ମନ ।
ତରଟି ଗୁହିଁଇ ବୁଢ଼ୀ କୋରଡ଼ିଆ ଆଖି,
ଦାନ୍ତ କଡ଼ମଡ଼ କରେ ଯମଦୂତେ ଡାକି ।
ପଡ଼େ, ଉଠେ, ପୁଣି ପଡ଼େ, ନ ପାରେ ସେ ବସି;
ଭୟେ କାଳ ପାଶେ ସତେ ପାରୁନାହିଁ ପଶି ।
ସନ୍ନିପାତ ବେଳର ତା ବିକଟ ମୂରତି;
ଅସ୍ଥି ଚର୍ମେ ଆବିର୍ଭୂତ କାହିଁ କି ଶକତି !
ଶେଷେ ଥଣ୍ଡା ହେଲା ବୁଢ଼ୀ, ଆସିଗଲା କାଳ;
ବେନି ନେତ୍ରୁ ବହିଗଲା ବେନି ଅଶ୍ରୁଧାର !
ପୁରୁଣା ଦଦରା ତାର ଜୋର୍ ଗୋଟି ଗୋଟି
ଅଳ୍ପ କ୍ଷଣେ ଛିଣ୍ଡାଇ ସେ ହେଲା ତଳେ ଲୋଟି ।
ହାତ ଯୋଡ଼ିବାକୁ ସିନା ନ ପାଇଲା ବଳ,
ନମସ୍କାରେ ମଥାଁ ନେଲା ମେଲାଣି ଈଶ୍ୱର;
ଯେ ମର୍ତ୍ତ୍ୟେ ଜୀବନ୍ତେ ଦୀର୍ଘ ବରଷ ସତୁର,
ବିନାଯୁଦ୍ଧେ ଯମ ସଙ୍ଗେ ଲଢ଼ିଥିଲା ବୁଢ଼ୀ;
ଧପଧପ ଜଳ ଦୀପ ନିଭିଲା ପବନେ,
ବୁଜି ଆହା ଦେଲା ଆଖି ସେ ବିଜନ ଗାଏଁ ।
କେତେବେଳେ ପାଣ୍ଟିଥିବ କେଜାଣି ସେ ଗ୍ରନ୍ତ,
ସତେ ପାଇଥିବେ ବାର୍ତ୍ତା କୁଟୁମ୍ବ ଗିଆଁ ତ ?

---

# ଖାଉପୁର ନ୍ୟାୟ

ଜପତପେ ସିଦ୍ଧହସ୍ତ କୁଟିଳ ବାବାଜୀ,
ଅଷ୍ଟାଙ୍ଗ ଶରୀରେ ଭସ୍ମ ଆଚ୍ଛାଦେ ବିରାଜ,
ଦିନେ ଚେଲାଙ୍କ ସହିତ
ଖାଉପୁର ରାଜ୍ୟେ ଆସି ହେଲେ ଉପନୀତ ।

ସେ ରାଜ୍ୟେ ଏକଇ ମୂଲ୍ୟ ସବୁ ଦ୍ରବ୍ୟ ପାଇଁ,
ସୁନା ରୁପା କୁଣ୍ଡା ସାରୁ ମଧ୍ୟେ ଭେଦ ନାହିଁ
ଚେଲା କହନ୍ତି ତା ଦେଖି,
"ନ ଯାଇ ଅନ୍ୟତ୍ର ଆସେ ଏ ରାଜ୍ୟ ଉପେକ୍ଷି ।"

କଣ ନାହିଁ ବାରମ୍ବାର ବାବାଜୀ ପ୍ରଥମେ,
ସ୍ୱୀକୃତ ହୋଇଲେ ଶେଷେ ଚେଲାଙ୍କ ବଚନେ;
ଦିନେ ବସି ନରପତି
ନରହତ୍ୟା ମକଦ୍ଦମା କରନ୍ତି ନିଷ୍ପତ୍ତି ।

ମୃତ୍ୟୁ ଘଟିଅଛି ଭାଙ୍ଗି ପଥର ପାଚେରି;
ସେ ଲାଗି ହୋଇଛି ଧରା ଆସାମୀ ମିସ୍ତ୍ରେରି;
ମିସ୍ତ୍ରୀ କରେ ନିବେଦନ,
"ମୁଁ ନୁହେଁ ପ୍ରକୃତ ଦୋଷୀ ବୁଝନ୍ତୁ ରାଜନ !"

"ପାଚୀରଟା ଗଢ଼ୁଥିଲି ବସି ମୁଁ ଯେକାଳେ,
ନାରୀ ବାଟେ ଗଲା ଶୋଭି ବହୁ ଅଳଙ୍କାରେ;
ଆଖି ରହିଲା ମୋ ଲାଖି,
ସେ ଯୋଗେ ଘଟିଲା ଖୁଣି, ଈଶ୍ବର ମୋ ସାକ୍ଷୀ ।"

ତାକୁ ଘୁଞ୍ଚ ନାରୀ ମୁଣ୍ଡେ ପଡ଼ିଲା ଚଡ଼କ,
ନାରୀ କହେ, "ମୋତେ ଦଣ୍ଡ ଦିଅ ନିରର୍ଥକ,
ମୋର ଯେତେ ଅଳଙ୍କାର
ଦିଳମ୍ବେ କଣିଆ ଆଜି ଦେଲା, ମୁଁ ନାଚାର ।"

ବଣିଆ ଆସିଲା ବେଳେ ହୋଇ ଚନ୍ଦୁଁ ଧର,
କହିଲା, "ନ ଥିଲା ମୋର ଦଉଆର ପର,
ଦେଲା ଉଡ୍ଛୁରେ କମାର;
ତାକୁ ଧରି ଶୂଳୀ ଦିଅ, ଆହେ ଗୁଣାଗାର !

କମାର ମାନିଲା ଦୋଷ, ହେଲା ଶୂଳୀଦଣ୍ଡ;
ମାତ୍ର ସେ କହିଲା, "ମୋତେ ଶୂଳୀ ଦେବା ପଣ୍ଡ;
ନଡ ପିଟେ ମୁଁ ହାତୁଡ଼ି;
ପିଠି ମୋର ପଡ଼େ ଉଠେ, ନ ଲାଗିବ ଶୂଳୀ ।"

ମୋ ଶାଳ ସମୀପେ ବସି ବରଗଛ ଛାମୁରେ
ବାବାଜୀ କରନ୍ତି ଜପ ଉଇଢ଼ିଙ୍କା ପ୍ରାପ୍ତେ;
ଶୂଳୀ ଯୋଗ୍ୟ ହେବାର ପାଇଁ
ତାଙ୍କ ଭଳି ଅପୁଷ୍ଟଜନ ସାରା ମର୍ତ୍ତ୍ୟେ ନାହିଁ ।"

ଶୁଣିଲେ ବାବାଜୀ ବଜ୍ର ପଡ଼ିଲଣି ଶିରେ,
ଚେଲା ସହ ମନ୍ତ୍ରଣାରେ ବସିଗଲେ ଧୀରେ;
କଥା ସ୍ଥିର ଶେଷେ ହେଲା—
ଆଗେ ଶୂଳ ଚଢ଼ିବାକୁ ବାହାରିବେ ଚେଲା ।

ଶୂଳଖୁଣ୍ଟ ପାଶେ ଗଲେ ରାଜା ମନ୍ତ୍ରୀ ବେନି,
କହନ୍ତି ଚେଲା, "ମୁଁ ଆଗେ ଯିବ ଶୂଳ ଚଢ଼ନ";
ନାସ୍ତି କରନ୍ତି ବାବାଜୀ;
କହନ୍ତି, "ଆଗେ ମୁଁ ଯିବ, ଏଠା ବଡ଼ ପାଜ ।"

ବାବାଜୀଙ୍କୁ ନ ଛାଡ଼ନ୍ତି ଚେଲା ତ ଶୂଳକ,
କହନ୍ତି, ପ୍ରଥମେ ଶୂଳ ଚଢ଼ିବେ ସେ ନକ,
ଅତି .ବଡ଼ଶଠ ବେଶର
ଆଜ ମରିବାକୁ କହାଁ ଏମନ କଥାଳ ?

ତଥ୍ୟ ବୁଝିବାକୁ ପ୍ରଶ୍ନ ପଚାରନ୍ତେ ନୃପ,
କହିଲେ ବାବାଜୀ, "ଅତି ପବିତ୍ର ଏ ଯୂପ;
ଶୂଳ ଚଢ଼ିଲେ ପ୍ରଥମେ,
ରାଜା ହେବା ଲେଖେ ଶାସ୍ତ୍ର ଭବେ ଆର ଜନ୍ମେ ।

"ଦ୍ୱିତୀୟେ ଚଢ଼ିଲେ ଶୂଳ, ମିଳେ ମନ୍ତ୍ରିପଦ;
ରାଜା ହେବ, ଆସ୍ପର୍ଦ୍ଧା, ମୁଁ ଥାଉଁ ଏ କଳଦ !
ଗୁରୁ ଯେଣୁ ମୁହିଁ ତାର,
ମୁଁ ରାଜା, ସେ ମନ୍ତ୍ରୀ ପିନା ଉଚିତ ବିଚାର ।"

ଶୁଣି ରାଜା ମନ୍ତ୍ରିବରେ କହିଲେ ତକ୍ଷଣେ,
"ପୁଣ୍ୟବଳେ ରାଜା ମନ୍ତ୍ରୀ ହେଲେ ଏ ଜନମେ;
ଏବେ କେ ପାରିବ କହି,
ଆର ଜନ୍ମେ ଭାଗ୍ୟେ ପୁଣି କିସ ଅଛି ରହି ?"

"ଏ ମାହେନ୍ଦ୍ର ଯୋଗ ଆଜ ନ ଯିବାଟି ଛାଡ଼ି,
ମୁହିଁ ରାଜା ହେବ, ଆଗେ ଯେବେ ଦେବେ ଶୂଳି;
ତୁମେ ମନ୍ତ୍ରୀ ହେବ ମୋର,
ପଛେ ଶୂଳିଖୁଣ୍ଟେ ବସ, ତୁଟୁ ଗଣ୍ଡଗୋଳ ।"

ରାଜ୍ୟସାରା ପ୍ରଜାବର୍ଗ ହୋଇଗଲେ ଜୁଣ୍ଡ,
ଚକତେ ବୃତ୍ତାନ୍ତ ସର୍ବେ, ନାହିଁ ପାଟିତୁଣ୍ଡ;
ନେତ୍ରେ ଦେଖିଲେ ଆନନ୍ଦେ,—
ଯେ ବେଳ ବସିବେ ଭଣ୍ଡ ରାଜା ମନ୍ତ୍ରି ପଦେ ।

କେତେ ଶତ ବର୍ଷ ବିତିଗଲାଣି ଜଗତେ,
କାଳସ୍ରୋତେ ହୋଇଗଲାଣି ଭଙ୍ଗାଗଢ଼ା କେତେ,
କିନ୍ତୁ ଭଞ୍ଜପୁର ନ୍ୟାୟ
ଉଲୁଗୁଣା ମନ୍ତ୍ରତନ୍ତ୍ର ନ ଯାଉଛି ହାୟ !



# ମଧୁସୂଦନ

ଉତ୍କଳ-ବରେଣ୍ୟ ସୂନୁ ହେ ମଧୁସୂଦନ,
ତୁମ୍ଭ ଲାଗି ଏକା ଆଜ ଏ ଉତ୍କଳ ଧନ୍ୟ ।
ଦେଶ ବିଦେଶେ ତ ତାକୁ ଚହ୍ନାଇଲ ଲୋକେ,
ତା ଗୌରବ ଘୋଷାଇଲ ପରଜନ-ମୁଖେ ।
ଜଗତ ଅନନ୍ତ-ସ୍ରୋତେ ଚଳାଇଲ ନେଇ
ପୁଣ୍ୟ କରପୁଟରେ, ନିଜେ କର୍ଣ୍ଣଧାର ହୋଇ ।
ଅଜ୍ଞାତ ଅଯତ୍ନ ଶିଶୁ ଅଜ୍ଞାତ-ଗରଭେ,
ଲୁଚି ସିନା ରତ୍ନଥାନ୍ତା ଜନନୀର ଭବେ ।
କି ନବ ଜୀବନ-ବାରି ସିଞ୍ଚି ଅବହେଳେ,
ନବ ଜୀବ ଦାନ ଆଜି କରିଛ ଉତ୍କଳେ ।
ସପନ-ଦୁର୍ଲ୍ଲଭ ଏହି ନବ ଜାଗରଣେ
ବିରାଜୁଛ, ଦେବ, ପୁଣ୍ୟ କନକ-ଆସନେ ।
ବସି ରାଜଦରବାରେ, ହେ ବର ସନ୍ତାନ,
ଅରଜିଛ ଜନନୀର ବହୁ ସନମାନ ।
ଶାସକ ଦୁଆରେ ପ୍ରଜା ଦାବି ଅଛି ଯେତେ,
ଶିଖାଇଛ ଉତ୍କଳକୁ ମରମ ସଙ୍କେତେ ।
ଘରେ ଘରେ, ଉତ୍କଳର ଇଷ୍ଟ ଦେବ ପରି,
ତୁମ୍ଭ ନାମ ଘୋଷୁଛନ୍ତି କୋଟି ନରନାରୀ ।
ବାଳ ବୃଦ୍ଧ ଯୁବା ବାଳା ବନିତା ବଦନେ
କାହିଁ ନାହିଁ ତୁମ୍ଭ କଥା ହୃଦ-ଆରାଧନେ ?
ସାଗର ଶଇଳ ଗ୍ରାମ ବନ ପଦାଙ୍କଳେ
ତତର ପରଶ ଯାଏ ଖେଳ କାହା ଗିରେ ?
ଜନ୍ମଭୂମି ଲାଗି ଯେତେ କଠୋର ସାଧନା,
ଯେତେ ତବ ପରାଣର ଜ୍ୱଳନ୍ତ ବେଦନା ।

ଦିନେ, ଦେବ, ରୋଗଶେଯେ ଶୋଇ ନିଯାତନେ
କହୁଥିଲ ପଦେ କଥା ମୁକ୍ତ ଆଳାପନେ ।
ନୟନ-ସୀମାନ୍ତେ କ୍ଷଣେ ମୁକ୍ତାବିନ୍ଦୁ ଢାଳି,
ବହିଗଲ ଦୁଇ ନେତ୍ରୁ ଦୁଇ ବିନ୍ଦୁ ବାରି ।
ନିମେଷେ ନୟନ ଗଲା ମୁଦିହୋଇ ମୋର,
କି ବିଶିଷ୍ଟ ବ୍ୟକ୍ତି ତୁମେ ଚିହ୍ନିଲି ନିକର ।
କେତେମନ୍ତେ କେତେ ଦିନ ଏଣୁ ପରିଚୟ
ଦେଇଛ ଉତ୍କଳେ, ଆହେ ତା ଆଦିତନୟ !
ଲଭିବେ କି ପ୍ରତିଷ୍ଠା ତବ ପାରିବୁଁ ବିଚାରି,
ତୁମର ଆଦର୍ଶେ, ଦେବ, ଏ ଜୀବନ ଗଢ଼ି ?
ଥାଅ, ଦେବ, ବଞ୍ଚିଥାଅ, ହେ ମଧୁସୂଦନ,
ଘୋଷୁଥାଉ ଉତ୍କଳ ଏ 'ମଧୁବାବୁ' ନାମ ।
କୋଟି ଜନ ହୃଦୁଁ ହୃଦେ, ହେ ଉତ୍କଳ-ପିତା,
ଢାଳିଯାଅ ପରାଣର ନିଗୂଢ଼ ବାରତା ।
ଗଢ଼ିଯାଅ ଜଣୁଁ ଜଣେ କରି ତୁମ୍ଭ ଭଳି
ଯେତେ ଏ ଉତ୍କଳ ଦେଶେ ଆଜି ନରନାରୀ ।
ସେହିମାନେ ତୁମର ହେ ସ୍ନେହେନ୍ଦୁ-ତନୟ,
ଢାଳି ଦିନେ ଦେବେ ପଦେ ଦୁର୍ଲଭ ହୃଦୟ !
ଗ୍ରାମୁଁ ଗ୍ରାମେ ରଖିଯାଅ ଶତ ଶତ ଶିଷ୍ୟ,
ତୁମ୍ଭହାତେ ଗଢ଼ା ହେଉ ଏ ଭୂମି-ଭବିଷ୍ୟ ।
ତେଜ ସବୁ, ଥରେ ଯେତେ ଉଦ୍‌ବିଗ୍ନ ଲେଶ,
ଅପୂର୍ଣ୍ଣ ନୈବେଦ୍ୟେ ମାତା ନ ଲଭନ୍ତୁ ତୋଷ ।
ଉତ୍କଳ ବରେଣ୍ୟ ସୂନୁ, ହେ ମଧୁସୂଦନ,
ତୁମ୍ଭଲାଗି ହେଉ ଭବେ ଏ ଉତ୍କଳ ଧନ୍ୟ ।

---

# ※ ଗଡ଼ରକ୍ଷା

"ଯାଉଛି, ପ୍ରିୟେ ଗୋ,   ଚାହାଲଣି ରାତ
ଯାଏ ମୁଁ, ମେଲଣି ବନ୍ଧୁ ସଭାର;
ରାଜା ରାଜ୍ୟଜନେ   ଡାକୁ ଯେ ଅଛନ୍ତି,
ଶତ୍ରୁ ସେନା ବେଢ଼ିଗଲେଣି ଗଡ଼।
ବୁଢ଼ା ପିଲା ଯୁବା   ଯୁବତୀ ଅଭେଦେ
କୁଟୀରୁଁ ସଉଧୁଁ ହୋଇ ବାହାର,
ଯିବେ ରଣଭୂମେ,   ଲଢ଼ି ପ୍ରାଣପଣେ,
କରିବେ ଅରାତି ସେନା ସଂହାର।
ମୁହିଁ ଯେବେ ଯିବି,   ସମରେ ଝୁଲିବି
ବସ୍ତ୍ର ବୀର ଶ୍ରେଷ୍ଠ ହଇନ ଶତ;
ସମର ପ୍ରାଙ୍ଗଣେ   ଶୁଆଇବି ଶତ୍ରୁ,
ଢାଳିବି ସହସ୍ର ଶତ୍ରୁ-ରକତ।
କାଢ଼ିବି ତୂଣୀରୁ   ତୀକ୍ଷ୍ଣ ଶର ଯେତେ,
ଶତ୍ରୁ ସୈନ୍ୟ ଖୋଜି ବିନ୍ଧିବି ଲକ୍ଷେ,
ମୋ ଶତ ସଇନେ   ବନ୍ଧିବେ ମୋ ସଙ୍ଗ,
ବଇରୀ ଶୋଇବେ ସକଳ ଡାକେ।

---

※ ଏ ପଦ୍ୟରେ ବର୍ଣ୍ଣିତ ଘଟଣାଟି ଗୋଟିଏ କମ୍ବଦନ୍ତୀର ବିଷୟ। ବିହାର ରାଜ୍ୟର ମାନଭୂମି ଜିଲାରେ ବରାହଭୂମି ଗୋଟିଏ ଓଡ଼ିଆବହୁଳ ଅଞ୍ଚଳ। ତାହା ସିଂହଭୂମି ଜିଲାକୁ ଲାଗିଛି। ସିଂହଭୂମି ଜିଲାର ଚକ୍ରଧରପୁରରେ ୧୯୧୯ ମସିହାରେ ଉତ୍କଳ ସମ୍ମିଳନୀର ବୈଠକ ହୋଇଥିଲା। ବରାହଭୂମିର ଓଡ଼ିଆ ପ୍ରତିନିଧି ସେଥିରେ ଯୋଗ ଦେଇଥିଲେ। କମ୍ବଦନ୍ତୀଟି ସେମାନେ କହିଥିଲେ। ଥରେ ଶତ୍ରୁ ଉତ୍ତର ଦିଗରୁ ଆସି ବରାହଭୂମି ଆକ୍ରମଣ କଲେ। ସେହି ଘଟଣାରେ ଓଡ଼ିଆ ଯୁବକ ଯୁବତୀ ନିଜର ବୀରତ୍ୱ ଦେଖାଇ ଦେଶକୁ ଶତ୍ରୁ କବଳରୁ ରକ୍ଷା କରିଥିଲେ।

ଏ ଦେଶ ପର୍ବତ ବନ ନଦୀ ପଦା,
ସୁଖେ ଯହିଁ ପଦେ ଝୁଲଛି ମୂର୍ଦ୍ଧ,
ବନ୍ଧୁ ରକ୍ତ ଦେହେ ଥିବାଯାଏ ମୋର,
ଶତ୍ରୁ କି ଗୋ କେବେ ପାରିବ ଛୁଇଁ ?
ଉଇଁ ଆସିଲଣି ପୂର୍ବ ନଭେ ରବି,
ପାଟଳ ବରଣେ ବୁଡ଼ାଇ ଧରା;
ସମରେ ମୁଁ ଯିବି, ଏ ସାରା ରାଇଜ
ଶତ୍ରୁ-ରକ୍ତେ ସିକ୍ତ କରିବି ଭରା ।
ଯାଉଅଛି, ପ୍ରିୟେ, ଶୁଭେ ରଣବାଦ୍ୟ
ଡାକୁଛି ମେଲଣି ବନ୍ଧୁ ସଭିଏ;
ରାଜ୍ୟ ରାଜ୍ୟଜନେ ଶୋକେ ଭ ଅଛନ୍ତି,
ଶତ୍ରୁ ସେନା ଘେରି ଗଲଣି ଗଡ଼ ।"
"ଏ କି କଥା କହ, ପ୍ରାଣେଶ, ସତେ କି
ତୁମ ବଚନ ମୁହିଁ ରଖିବି କ୍ଷଣେ ?
କେବେ କି ରମଣୀ ରଣପାରେ ବାଟେ
ପଠାଏ-ପତିଙ୍କି ପଠାଇ ରଣେ ?
ଘର ତ ଅଟଇ ନାରୀର ରାଇଜ,
ରକ୍ଷକ ତା ନାରୀ, ଆନ କେ ନୁହେଁ,
ବନ୍ଧୁ ଅଶ୍ରୁ ନାରୀ ନ ଢାଳେ କଦାପି,
ଯେଣିକି ରଣେ ନିଜ ଦଇତ, ପୁଏ ।
ସମରେ ରଞ୍ଜିତ ସ୍ୱାମୀ-ସୁତ-ଭ୍ରାତ
ସମ ସମ୍ପଦ କି ଅଛି ନାରୀର ?
ଚିରକାଳ ନାରୀ ହୋଇଛି ଏଭଳି,
ଏହା ଏକା ସଦା ହେବା ତା ସ୍ଥିର ।

ନିଅ ସଙ୍ଗେ ମୋତେ ରଣଭୂମେ, ପ୍ରିୟ,
ନ ରହିବି ବାସେ ପଡ଼ି ବରଜ,
ଯେତେ ଥର ତୁମେ ବଙ୍କାଇବ ଧନୁ,
ତେତେ ଥର ଶର ଦେବ ମୁଁ ଖଞ୍ଜି ।”

“ଟାଣି ଧନୁ ଗୁଣ ଟଙ୍କାର ଶବଦେ
ତେଜେ ଯୁବା ଯେତେ ତେଜିଲା ଶର,
ଚକିତେ ଚୌଦିଗେ ଦେଖିଲେ ସରବେ,
ଧରିଛି ତୂଣୀର ଯୁବତୀ କର ।
କରେ କର ଛନ୍ଦ ଯୁଗଳ ଦମ୍ପତି
ଚଳିଛନ୍ତି ଆଗେ ସମରଭୂମେ ;
ପଛେ ଶତ ବୀର ସଇନ ଚଳନ୍ତି,
ମୁଗ୍‌ଧ ସର୍ବେ ନାରୀ ବୀରତ୍ୱ ଗୁଣେ ।
ଚଳି ବୀର ଦର୍ପେ ଟଳେ ଦେବ ସ୍ୱର୍ଗେ;
ଆରୋହିଲେ ଉଚ୍ଚ ଗଡ଼ ପ୍ରାଚୀର ,
ଦେଖିଲେ, ଅଦ୍ଭୁତ- ସଇନ ସାମନ୍ତ
ମାଡ଼ି ରହିଛନ୍ତି ପ୍ରାନ୍ତର ତଳ ।
ଘନୁ ଘନ ରଣ- ବାଇଦ ବାଜିଲା,
ସମର-ପତାକା ଉଡ଼ିଲା ନଭେ ;
ସେ ଶତ ସଇନ ବୀର କଣ୍ଠୁ ତେଜ
ରଣ-ଗୀତ-ତାନ ଉଠିଲା ସର୍ବେ ।
ଶୁଣି କାନେ, ବୀର ଯୁବକ-ଯୁବତୀ
ଆରମ୍ଭିଲେ ମିଳି ଭୀଷଣ ରଣ ;
ଥରୁ ଥରେ ଯୁବା ବଙ୍କାଇଲେ ଧନୁ ,
ଖଞ୍ଜିଦେଲା ଧରି ଯୁବତୀ ବାଣ ।

ଯୁବଶ୍ରୀ ସମ କେ ଦୋସର ଗାଉଛେ ?
ଯୁବା ଖ୍ୟାତ ଦେଶେ ଜାଣନ୍ତି ଜନେ ;
ଯେତେ ଶର ଟବନ ଛାଡ଼ିଲେ ହୁଙ୍କାର
ଭେଦିଗଲା ଠିକେ ବଇରିଗଣେ ।
କେତେ ଶତ ଶତ୍ରୁ କେଜାଣି ସେ ଘାତେ
ପଡ଼ିଲେ ଭୂତଳେ ମୁଦି ନୟନ ;
ବଇରୀ ଶିବିର ପାଲଟିଲା ଦଣ୍ଡେ
ନର-ଶବ-ପୂର୍ଣ୍ଣ ଶ୍ମଶାନସମ ।
ସହସା ଅରାତି- ମେଘନାଦଙ୍କୁଁ କାହୁଁ
ବର୍ଚ୍ଛା କାଳରୂପୀ ଆସିଲା ଉଡ଼ି,
ଗର୍ଜି ଶତ୍ରୁ ସେନା କହିଲେ, "ଏ ବର୍ଚ୍ଛା
ବୀର ଯୁବା ବକ୍ଷ ନ ଯିବ ଛାଡ଼ି" ।
ଶୁଣିଲେ ଯୁବଶ୍ରୀ ବିଜୁଳି ସଞ୍ଚାରେ
ପତି ଆଗେ ଉଭା ହୋଇଲା ଯାଇ,
ପତି ତା ସେକାଳେ ଟାଣୁ ଥିଲା ଧନୁ
ପତ୍ନୀ ଶର ଖଞ୍ଜି ଦେବାର ପାଇଁ ।
ଅଲକ୍ଷିତେ ଆସି ବର୍ଚ୍ଛା ନିଦାରୁଣ
ଭେଦିଲା ଯୁବଶ୍ରୀ-ବକ୍ଷ କୋମଳ,
"ଗଲି ପ୍ରାଣେଶ" ସେ କହି ଦେଲା ଭୁଜ
ଭୂତଳେ ପଡ଼ିଲା ତଳି ସତ୍ୱର ।
ରୁଷ୍ଟି ନେଇ ଥରେ, ବଧୂର ଯୁବକ
ଲାଗିଗଲା ରଣେ ଦ୍ୱିଗୁଣ ବଳେ,
ବଙ୍କାଏ କାର୍ମୁକ, ନାହିଁ ତ ପ୍ରେୟସୀ,
ଆପେ ଶର ଖଞ୍ଜି ବନ୍ଧଇ ଖରେ ।

ଶତ ସୈନ୍ୟ ଥିଲେ          ଯାଇ ସେ ତା ସଙ୍ଗେ,
ଧନୁ ଗୁଣେ ଯୋଡ଼ି ନାହାନ୍ତି ଶର,
ତେବେ ରଣଭୂମେ          ବଇରୀ ସଇନୁଁ
ଜଣେ ପ୍ରାଣେ ନାହିଁ ରହିଲା ବୀର ।
ସଉଧ କୁଟୀର          ଅଭେଦେ ଗାଇଲେ
ବ୍ୟାପିଲା ସେ ବୀରନାରୀ-କୀରତି,
'ନାରୀ ତ ରଖିଲା          ଏ ଦେଶ ମହତ୍ତ୍ୱ'—
ମୁଖୁଁ ମୁଖେ ଗଲା ଭୁବନେ ରଟି ।
ନାରୀ ବୀରପଣେ          ସେ ସଇନ ଶତ
ରଣଭୂମେ ଥିଲେ ଦେଖି ନୟନେ,
ଧନୁଶର ବର୍ଚ୍ଛା          ଖଡ଼ଗ ତୂଣୀରେ
ସ୍ତୂପପୀଠ ଗୋଟି ରଚିଲେ କ୍ଷଣେ ।
ସେ ଭଙ୍ଗୁର ସ୍ତୂପ          ନାହିଁ ଆଜ ଆଉ
ଗଡ଼ ପ୍ରାଚୀରଟି ପଡ଼ିଛି ଭାଜି,
ସହସ୍ର ବରଷ          ଗଲାଣି ସେ ଦିନୁ,
ହଜି କାଳଗର୍ଭେ ଘଟଣା-ରାଜି ।
ତେବେ ସେ ଗାଇଲେ          ରଜା ପ୍ରଜା ସର୍ବେ
ବରଷକେ ତହିଁ ମିଳନ୍ତି ଦିନେ,
ଗରବେ ହୁଙ୍କାରି          କହନ୍ତି, "ନ ଥାନ୍ତା
ଏ ଦେଶ ତ ନାରୀ-ବୀରତ୍ୱ ବିନେ ।"



# *ପିଲ୍‌ଟି

"ବହୁଛି ଶୀତଳ ପବନ ଗଛ ପତ ହଲାଇ,
ଯାଆ ଯାଆ ଏବେ ପିଲ୍‌ଟିରେ, ଆଉ ଟାଣୁ କପାଇଁ ?
କେତେ ତ ହେଲାଣି ଉଜାଗର, ଭୋକ କରୁ ଯେ ଥିବ,
ଟାଣି ଟାଣି ତୋର ହାତକୁ ପୀଡ଼ା ଲାଗି ଟି ଯିବ ।
ଚମ୍ପ ଯାଇ ଥିର ହୋଇଲେ, ଅଙ୍ଗ ଗରମ ଲାଗି,
ଝାଳ ମୋର ମରିଗଲାଣି ଥଣ୍ଡା ପବନ ଲାଗି ।"

"ଝାଳ ବାବୁ ତୁମ ଦେହରୁ ହେ ମରିନାହିଁ ଆନ୍ତର,
ଟୋପା ଟୋପା ହୋଇ କପାଳୁ ଏଇ ପଡ଼ଇ ଝର ।
ଭୋକ ଶୋଷ ମୋତେ ନାହିଁ ତ, ଘରେ ଆସିଛି ଖାଇ,
ଏଇଟିକ ଶ୍ରମେ ହାତକୁ ବାଧିବ କପାଇଁ ?"

---

* କବିତାର ବିଷୟବସ୍ତୁ ମୟୂରଭଞ୍ଜର ଘଟଣା । କବି କାର୍ଯ୍ୟାନୁରୋଧରେ ଜଣେ ବନ୍ଧୁଙ୍କ ସହିତ ଯାଇ ବାରିପଦାର ଜଣେ ବରିଷ୍ଠ ବ୍ୟକ୍ତିଙ୍କ ଘରେ ଉପସ୍ଥିତ ହୋଇଥିଲେ । ପିଲ୍‌ଟି ଏହାଙ୍କ ଘରେ ଭୃକଣ କରୁଥିଲା । ସେଠାରେ ସେତେବେଳେ ବିଜୁଳି ପଙ୍ଖା ଚାଲୁ ନଥିଲା । ବାରିପଦାରେ ଗ୍ରୀଷ୍ମଋତୁରେ ପ୍ରବଳ ଗ୍ରୀଷ୍ମ ହୁଏ । କେହି କେହି ଘରେ ଟଣାପଙ୍ଖା ବ୍ୟବହାର କରନ୍ତି । ବଳଙ୍ଗ ନଦୀ ବାରିପଦାର ଉପକଣ୍ଠରେ । ସହରର ସାମାନ୍ୟ ବାହାରକୁ ଗଲେ ମେଘାସନ ପର୍ବତ ଦେଖାଯାଏ । ବାରିପଦା ନିକଟବର୍ତ୍ତୀ ଗୋଟିଏ ପଲ୍ଲୀଗ୍ରାମରେ ପିଲ୍‌ଟିର ଘର ।

"ନ ବାଧୁ ପଛେ ତୋ ହାତକୁ; ଭୋକ ଶୋଷ ନ ଥାଉ;
ଯାଅ ଯାଅ ବୁଲି ପିଲା ରେ, ଏବେ ନ ଟାଣ ଆଉ ।
ଲାଗିଲଣି ଥଣ୍ଡା ବହୁତ ଝଞ୍ଜା ପବନେ ତୋର,
ବାଟଚଲା ଶ୍ରମ ପରାଣୁ କଟିଗଲାଣି ମୋର ।
ଯାଅ ବୁଲି ଏବେ ଜୁସତେ ବସ ଶୀତଳ ହୋଇ
ଦେହ ସୁଖ ଲାଗି ପବନ ଆଉ ଲୋଡ଼ା ମୋ ନାହିଁ ।"

ଲୋଡ଼ା ନାହିଁ ବୋଲି, ବାବୁ ହେ, କିପାଁ କରୁଛ ମନା,
ବିଞ୍ଚିଦେବାରେ ମୁଁ ଦେହକୁ ସୁଖ ହୋଇବ ସିନା ।
ଏ ଶ୍ରମ ଟିକକେ କାହାରିଁ ଅଙ୍ଗେ ଲାଗିବ ବ୍ୟଥା ?
ଏ କାମ ତ ହେଲା ମୋହର ନିତି ଦିନର କଥା ।"

"ବୟସେ ବାଳୁତ ପିଲାରେ, ବଡ଼ ଅବୁଝା ବୁଦ୍ଧି,
ଖାଲିଟାରେ କିପାଁ ପଡ଼ୁଛୁ ଏତେ ଶ୍ରମ ମୋ ପାଇଁ ?
ଯେ ତୋରେ ଖୁଆଇ ପିଆଇ ରଖିଛନ୍ତି ପାଖର,
ତାଙ୍କ କଥା ସିନା ନିତି ତୁ କରୁଥିବୁ ନକର ।
ମୋ ସଙ୍ଗେ ତୋର ଏ ମରତେ କହ ଅଛଇ କସ,
ମୋ ଲାଗି ନ ଟାଣ ପଙ୍ଖା ତୁ, ଥିର ହୋଇଟି ବସ ।"

"ଥିର ହୋଇ ବସିଥିବ ତ ମାଆ ମୋର ଅନାଇ,
ଏତେ ତ ଉଚ୍ଛୁର ହେଲଣି, ବାପା ଆସିଲେ ନାହିଁ ।
ବାପା ମୋର କାଠ ହାଣୁ ଯେ ଥିବେ ବଣ ଭିତରେ,
ମୁହିଁ ଟାଣୁଥିବ, ବାବୁ ହେ, ପଙ୍ଖା ଏଇ କୋଠିରେ ।"

"ସୁଲୁ ସୁଲୁ ବାଆ ବୋହୁଛି, ଦେଖୁନାହୁଁ କି ତୁହି ?
ଝିଅଟେ ଟେରମ ଏଭଳି କରୁଅଛୁ କପାଁଇ ?
ଗଛପତ୍ର ହଲି ଯାଉଛି, ଧୂଳି ଯାଉଛି ଉଡ଼ି,
ଦେହୁଁ ମୋର ଝାଳ ପବନେ ଏବେ ଗଲାଣି ମରି ।
ନ ରହ ନ ରହ ଏଥି ତୁ ଖଣେ ମାତର ଆଉ,
ଦୂର ହୋଇ ଯାଇ ବସ ଯା, ଚଙ୍ଗା ଟାଣିବା ଥାଉ ।"

"ଗଛ ହଲୁଅଛି, ବାବୁ ହେ, ଚଙ୍ଗ ଯାଉଛି ନଇଁ,
ଚଙ୍ଗା ହାତରେ ନଇଁ ନଇଁକି ହଲୁ ଥିବଇଁ ମୁହିଁ ।
ସୁଲୁ ସୁଲୁ ବାଆ ବହୁଛି ଧୂଳି ଯାଉଛି ଉଡ଼ି ;
ଚଙ୍ଗା ଖଣ୍ଡି, ବାବୁ, ମୋ ହାତେ ଉଡ଼ୁଥିବ ସେଭଳି ।"

"ବହୁତ ତୁ ନଇଁ ନଇଁ ରେ ହଲଲୁଣି ମୋ ପାଇଁ;
କେତେବେଳ ଉଡ଼ାଲୁଣି ଏ ଚଙ୍ଗା ତୋ ହାତେ ଥାଇ ।
ବେଳ ତ ହେଲଣି ଦୁପ୍ପର, ହାତ ହେବଣି ବଥା,
ଭୋକ କଲେଣି ପିଲା ରେ, କହୁଁ ନ ଶୁଣୁ କଥା ?
ଯାଆ ଯାଆ ଏଥୁଁ ଛାଇରେ, ବସ ଶୀତଳ ହୋଇ,
ଏଖଣି ଆସିବେ ଫେରି ତୋ ନିଜ ବାବୁ ଏଠାଇଁ ।"

"ବସ, ବାବୁ, ଥରେ ଖଣେକ, କାହିଁ ଯାଉଛ ଚାଲି ?
ଅଧ ଘଣ୍ଟେ ଟାଣିଥାଏ ମୁଁ, ଯିବ ଯେବେ ବାହାରି ।
ନଡ଼ ନଡ଼ କେତେ ଗାଳି ସେ ଖାଏ କାମ ଉପରେ,
ଛପି ଖେଳ ଆଜ, ବାବୁ ହେ, ଟାଣେ ମୁହୂର୍ତ୍ତେ ହେବେ ।"

“କଏ ସେ ଏଭଳି, ପିଲ୍ଲରେ, ମହାମଣ୍ଡଳେ ଅଛି,
ନିତି ନିତି କାମେ ନଟୁରେ ତୋତେ ଟାଣି ଦେଉଛି ?
ଧପି ଖେଳ ଅକ ଏଥି ରୁ ଟାଣିଲୁଣି ତ କେତେ,
ଏତିକରେ ଥାଉ, ଏବେ ତୁ ବସ ଯାଇ ଉସତେ ।
ଗମ ଗମ ହୋଇ ଦେହୁ ତ ଝାଳ ଯାଉଛି ବହି,
ଆସ ଏବେ ପୋଛୁଦେବି ରେ ପାରୁ ନଥିବୁ ସହି ।”

“ସତେ, ବାବୁ, ତୁମ ଟିକକ ନାହିଁ ଦେନବ ମୋର,
ମୁଁ ବଙ୍ଗଳ ବୋଲି ଅଙ୍ଗୁ ମୋ ହାତେ ପୋଛୁବ ଝାଳ ?
ତୁମ ପାଖେ ରହି ଏତିକ ଟଙ୍କା ଟାଣିବା ହେଉ,
କି ଅଛି ମୋ, ଭାପେ ଦେହୁ ହେ ଝାଳ ତୁମର ବୋହୁ ।”

ଏତେ କହି ଅ.ହା, ମୋ ପାଶୁଁ ଗଲା ପିଲଟି ଝୁଲି,
ପିବାବେଳେ ନେତ୍ର ଯୁଗଳେ ଢଳଢଳଇ ବାରି ।
ଖଣ୍ଡେ ଦୂର ଯାଇ ମଉନେ ବସି ରହିଲା ସତ,
କି ଅବା ଭାଳଇ ଟେକଣେ ଥିର ନୁହଇ ଚିତ୍ତ ।

ଝୁଲୁ ଝୁଲୁ ବାଆ ବୋହିଲା ଗଛ ପତ୍ର ହଲାଇ,
ନିମିଷକେ ତହିଁ ପିଲାଟି ଗଲା ଉଭେଇ କାହିଁ ।
ଦୂର ଗିରି ଚୂଳ ଛପିନେ ବହେ ମଳୟ ଧାରା,
ଟେଣ୍ଟର ତୁରାହେ ଗଗନେ ଭାସେ ଜଳଦମାଳା ।
ନଦୀ ହ୍ରଦ ସୁଧାଉରସେ ଖେଳ ଉଠଇ ମାର,
ମୃଦୁଳ ସମୀର ଟେହଣେ ଭାସି ସରଗ-ଗିର ।
ଏ ସକଳେ ଏବେ ପିଲାଟି ମିଶି ଯାଇଛି କାହିଁ,
ନିତିଛତି ଅନିଷାରେ ମୁଁ ଥାଉ ଦେଖଇ ନାହିଁ ।

ପୁଣି କେତେ ଦେବ ଗ୍ରୀଷ୍ମ ଋତୁ ପ୍ରବେଶ ଆସି
ନବ ବାରିଦ ଗଗନେ ଧୀରେ ଉଡ଼ିବ ଖସି ।
ପିକ ଆମନ୍ତ୍ରଣ ପାଇବ ମୃଦୁ ମଳୟ ଧାରେ,
ସଖା ସ୍ନେହ ଯାଚନ ବନ୍ଧୁର ଆସି ମିଳିବ ତାଳେ ।

ନିରେଖିବ ଦୂରେ ଶ୍ୟାମଳ ମେଘାସନ ଶିଖର,
ବଳଙ୍ଗ ଜଟିଳ ଶୈଳକଟେ ଶୁଣି ଝଟିଣ କଳ ।
ସେତେବେଳେ ଖୋଜି ପିଲ୍ଲଟି ନାହିଁ ପାଇଲେ ଦେଲେ,
ଦେଖି ତ ପାରିବ ତ୍ରସ୍ତଟେ ତାରେ ବିଚ୍ଛେଦ ଜାଳେ ।
'ବାରୁଣୀ' ନର୍ତ୍ତରେ ଉଖାଳ ଶ୍ରମ ଭାସିତ କାୟା,
'ସରଳ' ସମୀର ପ୍ରବାହେ ଲଭି ସ୍ୱାସ୍ଥ୍ୟ ସ୍ପୃହା ;
ବାହୁଡ଼ ସ୍ୱଦେଶ ଆସିଲେ, କଏ ଲୋଡ଼ିବ ଆଉ ?
ତା ପଲ୍ଲୀ ନିକୁଞ୍ଜ ନିକେତେ ଲୁଚି ପିଲ୍ଲଟି ଥାଉ ।



## ❋ ଯାମସେଦପୁରେ

ଏହି ଯେ ନଗରୀ ଆଜ ମୁଁ ଦେଖେ ନୟନେ ରୁହିଁ,
ଘନ ଜଙ୍ଗଲରେ ଉଜ୍ଜଳ ଘର ଏହାର କାହିଁ ?
ସଉଧୁ ସଉଧ ଗଗନେ ଶିର ଉଠିଛି ଟେକି,
ମରତୁ ଉଠିବା ପାହାଚ ବାନ୍ଧ ସରଗେ ନେକି !
ସୁଖ ସଉଭାଗ୍ୟେ ନିରତେ ହସି ରହନ୍ତି ଜନେ,
ମର ଦୁଃଖ ଶୋକ ନାହାନ୍ତି ସତେ ଦେଖି ନୟନେ !
କଳେ ନିତି ଧନ ସମ୍ପଦ ଶିଳ୍ପ ଗଢନ୍ତି କରେ,
ଲୁହାରେ କରନ୍ତି ସୁନା ସେ କର ପରଶେ ଖରେ ।
କି ଅଛି ଅପୂର୍ବ ମର୍ତ୍ତ୍ୟେ ଯା ଧର ନାହାନ୍ତି ବସି ?
ମନାସନ୍ତି ସତେ ଭୁଞ୍ଜିବେ ସ୍ୱର୍ଗ-ସମ୍ପଦ ହସି ।
ଏହି ଯେ ମୋର ନୟନେ ଥରେ ଦେଖିବା ପାଇଁ
ନିଖିଳ ଭୁବନୁ ସବେଗେ ଜନେ ଆସନ୍ତି ଧାଇଁ ।
ମାତ୍ର ସେ ଯାଆନ୍ତି ଚରଣେ ଶିଳା ସରଣୀ ପରେ,
ଅଜାଣିତେ କେତେ ଦଳନ୍ତି ଆଶା-କଳ୍ପ ଲତେ ।
କଳ ଘନ ମନ୍ଦ୍ର ଗର୍ଜନେ କର୍ଣ୍ଣେ ଶୁଣନ୍ତି ମିଶା
ଦୁଃଖିହୃଦ ବୃଥା କ୍ରନ୍ଦନ ଧୀର ନୀରବ ଭାଷା ।
କେତେ ଅନ୍ଧା ପଲ୍ଲୀ କୃଷକେ ଚିତ୍ତ ଉଲ୍ଲାସ ତାନେ,
ହଳ ବାହି ଏଠି ପ୍ରାନ୍ତର ଭରି ନ ଥିବେ ଥରେ ।

---

❋ ବର୍ତ୍ତମାନ ଯାମସେଦପୁର ଲୁହାକାରଖାନା ଯେଉଁଠାରେ ବସିଛି, ପ୍ରାୟ ପଚାଶ ବର୍ଷ ପୂର୍ବେ ସେଠାରେ କାଳିମାଟି, ସାକ୍ଚି ପ୍ରଭୃତି ନାମରେ କେତେଗୁଡ଼ିଏ ପଲ୍ଲୀଗ୍ରାମ ଥିଲା । ଓଡ଼ିଆ ଓ ଆଦିବାସୀ କୃଷକମାନେ ସେ ସବୁ ଗ୍ରାମରେ ବାସ କରୁଥିଲେ । ଟାଟା କମ୍ପାନୀ ସେମାନଙ୍କୁ ସେଠାରୁ ବାସଚ୍ୟୁତ କରି ସେମାନଙ୍କ ପୈତୃକ ଭୂସମ୍ପତ୍ତି ଦଖଲ କରି ନେଲେ । ପ୍ରସିଦ୍ଧ ଶିଳ୍ପପତି ଯାମସେଦଜୀ ଟାଟାଙ୍କ ନାମ ଅନୁସାରେ ବର୍ତ୍ତମାନ ସହରର ନାମ ଯାମସେଦପୁର ହୋଇଛି ।

କେତେ ତ କୃଷକ-ଘରଣୀ ସ୍ନେହେ ଗିରସ୍ତ ଲାଗି
ଭାତ ଘେନ ବସିଲେ ଥିବଟି ଆସି ସରମେ ଭାଗୀ ।
ପ୍ରାଣପତି ପେଟ୍ଟୁ ବଳିଲେ, ଲଟା ଉଡ଼ାଳେ ବସି,
ନିଜ ପେଟ ଅଳ୍ପେ ମଣ୍ଡନେ ଭରିଥିବଟି ହସି ।
ଫେରନ୍ତେ କୁଟୀରେ ଚରଣ ଲାଗିଥିବ ତା ଘର,
ଗିରସ୍ତ ସଙ୍ଗତେ ନଥିଲେ, କିବା କୁଟୀର-ଶିଶ ?
ସେହି ଶିଶୁମାନ ଭଙ୍ଗି ତ ଗଢ଼ା ଏ ପୁସ୍ତ ଆଜି,
ସେହି ପଲ୍ଲୀ-ସୁଖଶରଧା ଏଥି ରହିଛି ଭଜି ।
ଖୋଳିଲେ ମୃତ୍ତିକା ପାଇବ ହଳ ଲଙ୍ଗଳ ଗାର,
ଦୁଃଶିଳ୍ପଦେ ଦେଖି ପାରିବ ଧନ ପେଷଣ ଭାର ।
ଗଛ ଲଟା ମୂଳ ନଜାଣେ ଆଜ ନଥିବ ଶୁଖି,
ଦିନେ ଯହିଁ କାଟି ଫସଲ ଚଷା ଥିବଟି ରଖି ।
କେଦାର-କନକ-ସମ୍ଭାରେ ଭରିଥିବ ତା ମନ,
ତୋଷେ ବରଷଟି ଖାଇ, ସେ ଯାପିପାରିବ ଦିନ ।
ଆଜ ଏବେ ଯାଇ କେବଣ ଦୂର ଦୁର୍ଗମ ପଥେ,
ଝରି ସ୍ତ୍ରିଶ ପୁଷ୍ଟ କାନ୍ଦୁଛି ଥିବ ନିର୍ଜନ ପେଟେ ।
ସ୍ମରୁଥିବ ତା ଅତୀତ ଭବ-ସମ୍ପଦ-କଥା,
ଶମନ ଜୀବନ୍ତ ପୀଡ଼ନେ ନୋଇଁ ଦଇନେ ମଥା ।
ନିଦାରୁଣ ଏହି ଛବି କେ ଯେବେ ଦେଖିବ ଲୋକ,
ଏ କୁବେର-ପୁରେ କିପାଇଁ ବାଟରେ ଆସିବ ବର ?
ଭୁଲିବାର ଯାଇ ଆସେ ତ ମନ୍ତ୍ର ପଦା କାନରେ,
ଅନଶନେ ଯନ୍ତ୍ରେ ଉଦର ଜାଳି ଭ୍ରମନ୍ତି ଜନେ ।
ରହ, ହେ ନଗରନିବାସି, ଅର୍ଦ୍ଧ ନୃପତିସ୍ଥିତ;
କି ଫେରିବ ଦିନେ ଏ ପୁରେ, ତେଜ ଯାଉଛି ଆଜ ।

---

# ମରାଳ ଦମ୍ପତି

ଏ ତ ସେ ଦିନର କଥା
ଲଭେ ମନୁଁ ଆଜ ଯାଇନ ପାସୋର, ତଳେ ଶମି ନାହିଁ ବ୍ୟଥା;
ଦେଖିଛୁ ଯାହା ସେ ନାଚୁଛି ନୟନେ,
ରସନାର ବାଣୀ ଶୁଭଇ ଶ୍ରବଣେ;
ଭୁଲିବାକୁ ପିନା ପାଞ୍ଚୁଛି, ଭୁଲିବାପାଇଁ ଯେ ନମିଲେ ପନ୍ଥା ।
ଗୁନ୍ଥା ପ୍ରୀତିଡୋରେ ରହୁଥିଲେ ଖେଳେ ମରାଳ ଦମ୍ପତି ବେନ;
ନୟନୁଁ ନୟନେ ହୋଇ ଦେଖାଦେଖି,
ହୃଦଗାଥା ନିତି ରଖୁଥିଲେ ଲେଖି;
ଏକ ଆନର ସେ ସେନେହ ବନ୍ଦନା ଭରନ୍ତି ଅନ୍ତରେ ଯେନ ।
ଦିନେ ନରଗଣ ଦାରୁଣ ସନ୍ଧାତ ଲଭିଲା ମରାଳ ପତି,
ସର୍ବାଙ୍ଗ ଶରୀରେ ଭୋଗିଲା ଯାତନା
ସେଧି ନ ପାରିଲା ମରଣ ମୁର୍ଚ୍ଛନା,
ପ୍ରାଣେଶ୍ୱରୀ-ମୁଖ ଅନାଇଁ ଯେତେବେ ସେ ପଶ୍ୱିଳା ଜଗଣେ ଶକ୍ତି ।
କେତେ କଲବଲ ହେଲା ସେ, ବିକଳ, କେତେ ହେଲା ଛଟପଟ,
ପଡ଼ିଲା ଉଠିଲା, ଆଖୁଲେ ସବଳା,
ଦେଖିଥିଲେ ନିଷ୍ଠେ ତରଳନ୍ତା ଶିଳା;
ବଜ୍ରେ ଗଢ଼ା ବୁକୁ ଫାଟି ତ ଯାଆନ୍ତା, କି ଘୃର ମାନବ ସଠ !
ଦିନେ ମୃତ୍ୟୁ ଭିଜ ନେହ ପ୍ରୁଗ ବୁକ, ପଢ଼ିଲା ମରାଳ ଶୋଇ;
ମରଣ ପରଶେ ତନୁ ତା ନିଷ୍ଟଳ,
ହୃଦୟୁ ଫାଲିଟି ଯାଇଛି ପଥର ;
ମରାଳୀ ଜୀବନେ ପ୍ରଭାତ ସହସା ପ୍ରଦୋଷ ଗଲାଟି ହୋଇ !

ଅନ୍ନ ଜଳ ଛାଡ଼ି ସରତେ ମରାଳୀ ଜଗିଲା ମରାଳ ଶବ;
ପୂତଗନ୍ଧ ମିଶିଗଲା ସମୀରଣେ,
କମ୍ପିଲା ଆବାସ ମାଛି ଗଣଗଣେ;
ଗଗନେ ଶୁଭିଲା ବିକଟ ମାଂସାଶୀ କୁଆ ଶାଗୁଣାଙ୍କ ରବ ।
ଦ୍ୱାରଗତେ ତହୁଁ କ୍ଷୁବ୍ଧ ଗୃହପ୍ରଭୁ ଶବ ଘୁଞ୍ଚାଇଲେ ବାହୁଁ ;
ଭାବଥିଲେ, ଶୋକେ ରୁହିଁବ ମରାଳୀ,
ମାଡ଼ ତା ଭବନେ ଯିବ ନାହିଁ ଛାଡ଼ି;
ଦେଖିଲେ; ଝୁଲେ ସେ ଅଧୀର ଚରଣେ ପଛେ ଅନୁସରି ଆଶୁ ।
ବାନ୍ଧିବାର ପାଇଁ ତାରେ ଗୃହସାଇଁ ବଢ଼ାଇଲେ କର ପସ,
ସେ କର ମରାଳୀ ଚୁମ୍ବିଲା ଚଞ୍ଚୁକେ,
ଶୁଷ୍କମୁଖେ ତାଙ୍କୁ ଜଣାଇଲା ଦୁଃଖେ;
ବାଣୀ ସିନା ନାହିଁ ସ୍ଫୁରିଲା କଣ୍ଠୁ ତା, ମାଗିଲା ମେଲାଣି ଭାଷା ।
ଦେଖି ଗୃହପତି ଶୋକାକୁଳ ଅତି ନେତ୍ରୁ ଗଡ଼ାଇଲେ ଲୁହ;
ବୁଝିଲେ ମରାଳୀ ଯାଉଅଛି ସତ୍ୟ,
ନ ରହିବ ଏକା ତେଜି ପ୍ରାଣପତି;
ମରବେ ଭୂଇଁରେ ଛାଡ଼ିଦେଲେ ବାଟ, ଶୂନ୍ୟ ହୋଇ ଗଲା ଗୃହ ।



# ସୈନିକର ସମ୍ମାନ

ନଗରଭ୍ରମଣେ ରାଜନ'ଛନ୍ତି ବାହାରି ଏକା,
ପବନ ବହୁଲେ ପଥେ ସେ ହୋଇଯାଆନ୍ତି ଥକା ।
ଦେଖି ନାଗରିକେ ନୃମଣି-ମୁଖମଣ୍ଡଳ-ଶିରୀ,
କହନ୍ତି, "ରାଜନେ କୁଶଳେ ରଖିଥାଆନ୍ତୁ ହରି !"

ସେଥି ବାଟେ ଗଲା ବେଳକାଳେ ଯାନ ନରେଶ ଅତି,
ଶବ ଗୋଟି ବୁହା ହୋଇ ସେ ଚିତା-ତଳପ ପ୍ରତି ।
ଦରଭଙ୍ଗା ଜୀର୍ଣ୍ଣ ଶକଟେ ଆଣି ଦଇନେ ତାରେ,
ଟାଣୁ ଜଣେ ଥିଲା ଏକାକୀ ଶୀତ ସମୀର ଧାରେ ।

ଶକଟେ ଗଡ଼ୁଛି ଶବଟି; ଦେହ ଝରୁଛି ଖାଲି,
ବଦନେ ପବନ ଲେପୁଛି ଆଣି ବାଟର ଧୂଳି ।
ଜଣକେ ସେ ଯାନ ସହଜେ ନାହିଁ ହେଉଛି ଟାଣି
ଶ୍ରମେ ତାର ଶୁଖିଯାଉଛି ମୁଖ, ନେତ୍ରେ ବୁହାଣି

ଦେଖି ଠିଆ ହେଲେ ନୃମଣି, ଠାରି ଗାଇଲେ ତାରେ,
"କାହାରେ ଏ ନେଉଛ ଶ୍ମଶାନେ ?" ବୋଲି ପୁଚ୍ଛିଲେ ଧୀରେ
"ସୈନିକ ଜଣେ ଏ ମାତର," କହୁ ପଥିକ କଥା,
ଟାଣି ପୁଣି ପଥେ ଚାଲିଲା, ଶ୍ରମେ ନୁଆଇଁ ମଥା ।

"ସୈନିକ ଜଣେ ଏ ମାତର" ନୃପ ଶୁଣିଲେ ଗିର,
ଏ ଦେଶ ତନୟ ଜଣେ ଏ ଯାନ ଅଥଚ ଯାର ।
ଚାଲି ଯିବ ମୁହିଁ ସଙ୍ଗତେ, ମର୍ତ୍ତ୍ୟେ ଏଭଳି ଜନ,
ସନମାନ ଦନେ ଶ୍ମଶାନେ ନେବା ମୁହେଁ ଘଟଣ !"

ନୁଆଇଁଲେ ମଥା ନୃପତି, ଦେଲେ ମୁକୁଟ କାଢ଼ି,
କୋଟିଏ ପରଜା-ମଉଡ଼ମଣି-ସମ୍ମାନ ଗୁଡ଼ ।
ଆଗେ ଚଳିଅଛି ଶବଟି ପ୍ରାତ ଶୀତଳ ବାତେ,
ଅନୁସରି ପଛେ ଚଳନ୍ତି ନୃପ ଶ୍ମଶାନ ପଥେ ।

ଦେଖିଲେ ନଗର-ନିବାସୀ, ଛାଡ଼ି ଆପଣା କାମ,
ଶବ ପଛେ ପଛେ ଚଳିଲେ, ଯୋଡ଼ି ମଥାଟି ମାନ ।
ରଜା ପ୍ରଜା ନାହିଁ ଭେଦଭେଦ, ନାହିଁ ନଥିଲା, ଥିଲା,
ସର୍ବେ ପଛେ ଚଳିଅଛନ୍ତି ବୁଢ଼ା, ଯୁବକ, ପିଲା ।

ଯେତେ ଦୂରେ ଗଲେ ଉଠିଲା ବଢ଼ି ସେତେ ଜନତା,
ଚିତା ପାଶେ ରହି ନୋଇଁଲା ଝୁଣ୍ଡ ମାନବ ମଥା ।
ସବୁ ଆଗେ ସିନା ନମଣି ନୃପସମ୍ଭାର ଫେଇ,
ଧନ ସାର ଲାଗି ହୃଦୟୁଁ ସ୍ନେହ ଭକତି ଦେଇ ।



## ସ୍ୱର୍ଣ୍ଣାକ୍ଷରେ

ବ୍ୟୋମରାଜ୍ୟ ଗ୍ରହ ତାରା ଚକ୍ର ଆବର୍ତ୍ତନେ
କଟିଲାଣି ସାତ ଶ ବରଷ,
କେତେ ଗିରି, କେତେ ତୁଙ୍ଗ ପ୍ରସ୍ତର ସଉଧ
ଭାଙ୍ଗିଲାଣି କାଳର ପରଶ ।

କେତେ ତ ଦୁର୍ଲଭ-ନିଧି ହଜିଲାଣି ଭବେ,
କେତେ ସ୍ମୃତି ଗଲାଣି ପାସୋରି;
ଗୋଟିଏ ଘଟଣା କିନ୍ତୁ ଶତ ଲକ୍ଷ ହୃଦେ
ସ୍ୱର୍ଣ୍ଣାକ୍ଷରେ ରହିଛି ଭାସ୍ୱର !

ଚନ୍ଦ୍ରଭାଗେ ଲାଗିଅଛି ମନ୍ଦିର ନିର୍ମାଣ,
ଭଜେ ଦେବେ ସଦେବେ ସହିତା;
ଚୂଡ଼ା ତାର ମେଘମାଳା ଛୁଇଁବ ଗରବେ,
ସୌଦାମିନୀ ଦେବ ଗଳେ ଛଟା ।

ବାରଶହ ଶିଳ୍ପୀ, କେତେ ବ୍ୟାପାରିତ ଚାତୁର୍ଯ୍ୟ,
ନ ଜାଣନ୍ତି ଆହାର ବିରାମ,
ତିନି କୋଶ ଦେଶ ବ୍ୟାପି ଚଳିଛି ସୃଜନି,
ଦିବା ନିଶି ଲାଗିଅଛି କାମ ।

ସବୁ ମଧ୍ୟେ ଧ୍ୟାନେ ରତ ବନ୍ଧାଣିରଚନ,
ଗଢ଼ୁଛି ସେ ନବଗ୍ରହ ପାଠ;
ମୁଖଶାଳା ଦ୍ୱାରୁ ଦେବ ଗରିମା ସୃଜଇ,
ପ୍ରକଟିବ ସୁଷମା ବିରାଟ ।

ସକାଳେ ଆସଇ ଭୁଞ୍ଜି ବାସେ କାରିଗର,
ଦିନସାରା କରଇ ସାଧନା,
ସଞ୍ଜେ ପୁଣି ଫେରି ମୁଖେ ଛୁଏଁ ଅନ୍ନଜଳ,
ପାଷାଣେ ତ ଆଙ୍କୁଛି କଳ୍ପନା ।

ସେ ପାଷାଣୁ ନୟନ ତା ନ ଫେରେ ପଲକେ,
ଧ୍ୟାନ ଶ୍ରମେ ଶୁଖିଯାଏ ପାଟି;
ବାମ କର ପଛେ ମାତ୍ର ଦିଏ ତା ପଠାଇ,
ପାନ ଖିଲି ଆପେ ଆଣି ନାତି ।

କେତେ ଖିଲି ଖାଏ ନାତି, ନାହିଁ ତା କଳନା,
ପାନେ ତାର ବଢ଼ଇ ଧିଆନ,
ଦିନୁ ଦିନ ଖାଇ ସେହି ଏକା ମୁଖସୋତ,
ପିତା ତାକୁ ଲାଗିଲଣି ପାନ ।

ନଅ ଋତୁ ନବଗ୍ରହେ ଲଗିଛି ସମସ୍ତ,
ନବ ମୂର୍ତ୍ତି ସରିଲଣି ଗଢ଼ା,
ଦଶମ ଋତୁ ତା ଆସି ଛୁଦେବଣ ବସନ୍ତ,
ନାହିଁ ଜାମ ସୁଆଁ ପିକା ଛଡ଼ା ।

ବିଗ୍ରହେ ଲାଗିଛି ଭୋଗ, ନପଡ଼େ ପଲକ,
ଧ୍ୟାନ ଲାଗି ଯାଉଥିଲା ତାର;
ଦଣ୍ଡକେ ଖିଲ ତା ତନ୍ଦ୍ରି, ଦେଲା ନେଇ ମୁଖେ,
ଆଖି ପତା ହୁଏ ଥରଥର ।

ପରମ ମଧୁର ସ୍ୱାଦ ଲଭିଲା ରସନା,
ବଦନେ ତା ଚହଟିଲା ବାସ;
ରୋମାଞ୍ଚ ହୋଇଲା ତାର ଅଷ୍ଟାଙ୍ଗ ଶରୀରେ,
ଅଙ୍ଗ ଅଙ୍ଗେ ପୁଲକ ପ୍ରକାଶ ।

"ଏ ନୁହେଁ ତ ଘରେ ଭଙ୍ଗା ନାଉହାତ ପାନ",
କାରିଗର ଚିନ୍ତଇ ମନେ,
ଚକିତେ ବୁଲାଇ ମୁହଁ, ପୃଷ୍ଠଦେଶେ ତାର
ଉଭା ନୃପ, ଦେଖିଲା ସମ୍ଭ୍ରମେ ।

ଭୂମୁଡ଼ି ଦେଲା ସେ ଝଟ, ହେଲା ନତଜାନୁ,
କ୍ଷମା ଭିକ୍ଷା କଲା ଅବନ୍ତରେ,
"ଏ କି ଦୟା ଅକିଞ୍ଚନେ !" କହିବ ଇଚ୍ଛିଲା,
ଇଚ୍ଛା ତାର ରହିଗଲା ଚିତ୍ତେ ।

ଉତ୍କଳ ନୃମଣିବର ବୀର ନରସିଂହ
ଉଠାଇଲେ ତାକୁ କର ଧରି,
କହିଲେ, "ଧନ୍ୟ ମୁଁ ହେଲି, ରେ ଜଗୁ ବଢ଼ାଣି,
ଏ ସାମାନ୍ୟ ସେବା ତୋ ଆଚରି ।

ମୁଁ ପିନା ମନୁଷ୍ୟକୁଳେ ହୋଇଛୁ ନୃପତି,
ଲଭି ହେଲେ ପିତୃଦତ୍ତ ରାଜ୍ୟ;
ଭୁଞ୍ଜି ତ ସ୍ୱଗୁଣେ ବଡ଼ କାରିଗରେ ରଜା,
ତେଣୁ ପୂଜ୍ୟ, ରେ ନମସ୍ୟ ଆର୍ଯ୍ୟ !”

ସେଦନୁ ଏ ଗ୍ରନ୍ଥଟାର ଖଣ୍ଡ ଆବର୍ତ୍ତନେ
ବିତିଲାଣି ସାତ ଶ ବରଷ;
କେତେ ଗିରି, କେତେ ଭୁଙ୍ଗ ପ୍ରସ୍ତର ସନ୍ଧି
ଭାଙ୍ଗିଲାଣି କାଳର ପରଶ ।

କେତେ ତ ଦୁର୍ଲଭ ନଧି ହଜିଲାଣି ଭବେ,
କେତେ ସ୍ମୃତି ଗଲାଣି ପାସୋରି;
ଅଘଟନ ଏ ଘଟଣା ଶତ ଲକ୍ଷ ହୃଦେ,
ସ୍ୱର୍ଣ୍ଣାକ୍ଷରେ ରହିଛି ଭାସ୍ୱର ।



# ରାଜାଙ୍କ ମାଂସ ଦାନ

ବହୁଶତ ବର୍ଷ ପୂର୍ବେ ଏ ପୁଣ୍ୟ ଭାରତେ,
ଯଦୁପତି ଉଶୀନର ପ୍ରଖ୍ୟାତ ଜଗତେ ।
ଧରି ରାଜଦଣ୍ଡ କରେ କରନ୍ତି ଶାସନ,
ବହି ସ୍ନେହ ପ୍ରଜାଗଣେ ପୁତ୍ର କନ୍ୟା ସମ ।
ନ୍ୟାୟେ ସ୍ୱୟଂ ବୃହସ୍ପତି ନୃପ ଶିରୋମଣି,
ଦୟାର ସାକ୍ଷାତ ମୂର୍ତ୍ତି, ବୀରତ୍ୱେ ଅଶନି ।
ଧର୍ମରକ୍ଷା ଲାଗି ଦିନେ ଉଶୀନର ରାଜ୍ୟେ,
ଅମାତ୍ୟ ଅମଳ ସହ ଲିପ୍ତ ରାଜକାର୍ଯ୍ୟେ;
ଆସିଲା ସହସା ଶୂନ୍ୟୁଁ କପୋତ ସେକାଳେ,
କହିଲା, "ଶ୍ରୀପଦେ ଦିଅ ଶରଣ ଏ ଦୁରେ;
ପଛେ ଗୋଡ଼ାଇଛି ଶ୍ୟେନ, ଆସିବ ଏକ୍ଷଣି,
ମାରି ପ୍ରାଣେ ହତଭାଗ୍ୟେ ଖାଇବ, ନୃମଣି ।"
ନସରୁଁ ମୁଖୁ ତା କଥା, ଆସିଲା ସଞ୍ଚାଣ;
କହିଲା, "ମୋ ଖାଦ୍ୟ ମୋତେ ଦିଅ ନରରାଣ !
କରେ ମୂର୍ଦ୍ଧି ପକ୍ଷୀ ରାଜ୍ୟେ ରାଜତ୍ୱ ଗଗନେ,
ଯେତେବେ ଯାକୁ ପାଏ, ଖାଏ ବୁଭୁକ୍ଷା ମେଣ୍ଟେନେ ।

ହସ୍ତକ୍ଷେପ ମୋ ଶାସନେ ନକର, ରାଜନ,
ଛାଡ଼ିଦିଅ କପୋତକୁ, ଯାଏ ମୁଁ ବହନ ।"
ଶୁଣି ଶ୍ୟେନ ଯୁକ୍ତି, ଶିବି ହୋଇଲେ କାତର,
ତେଜ କି ଆଶ୍ରିତେ ଦେବେ ନୃପ ଉଶୀନର ?
କହିଲେ, "ସଞ୍ଚାଣ, କ୍ଷୁଧା ମେଣ୍ଟାଇବ ସିନା;
କ୍ଷୁଧାଗ୍ନି କି ନ ଶମିବ ଏ କପୋତ ବିନା ?
ପ୍ରଚୁର ମାଂସ ମୁଁ ଭକ୍ଷ ଦେଉଅଛି ଆଣି,
ବଞ୍ଚାଅ ଆଜ ତେବ ପ୍ରାଣେ ଏ ନିସ୍ୱହ ପ୍ରାଣୀ ।"
ଶୁଣି ତା ସଞ୍ଚାଣ ବେଗେ କହେ ଯୁକ୍ତି ଛଳେ,
"ଦୟାବନ୍ତ ରାଜା, କହିଁ ଭୁଲାଅ ଭୁଲଛଳେ ?
ଏକ ଜୀବେ ବଞ୍ଚାଇବ, ଅନ୍ୟ ଜୀବ ମାରି;
କି ପୁଣ୍ୟ ଅର୍ଜିବ ବୋଲ ଏ କପୋତ ତାରି ?
ବହିଛ ରାଜସ ଗୁଣ, ରାଜନ ଅନ୍ତରେ,
ତହିଁ ପାଚ ଆନ ମାଂସ କପୋତ ବଦଳେ ।"
ରାଜସୁଁ ସାତ୍ତ୍ୱିକ ଗୁଣେ ବଡ ଉଦ୍ଭୂତ,
କହିଲେ, "ସଞ୍ଚାଣ, ଆଉ ନୁହଁ ରୁଷ୍ଟମତ ।
ମାପି ତୁଳାଯନ୍ତ୍ରେ ଦେବି ମୋ ଦେହୁ ପିଶିତ,
କପୋତର ଓଜନମତେ ଘେନ, ବୁଭୁକ୍ଷିତ !
ତଉଲେ ଓଜନ ଯେବେ, ଦେବ ମୂର୍ଖ ତୁଳ
ଅଣାଉଛି ତୁଳାଯନ୍ତ୍ର, ସୁଶାଣିତ ଛୁରୀ ।"
ତୁଳାଦଣ୍ଡ ଏକପାର୍ଶ୍ୱେ କପୋତ ବସାଇ,
ନିଜ ଦେହୁ ମାଂସ ଖଣ୍ଡ କାଟି ନରସାଇଁ ।
ଥାପି ଅନ୍ୟ ପାର୍ଶ୍ୱେ ତାକୁ, ଧରନ୍ତେ ସେ ଦଣ୍ଡ,
ହୋଇଲା କପୋତ ଭାରି, ଲଘୁ ମାଂସଖଣ୍ଡ ।

କାଟିଲେ ନୃପତି ଉରୁ ଆଉ ଖଣ୍ଡେ ମାଂସ,
ରକ୍ତନଦୀ ବହେ ପିନା, ଭାର ଅନ୍ୟପାର୍ଶ୍ୱ ।
ପଡ଼ିଗଲା ରାଜସଭା ମଧ୍ୟେ ହାହାକାର,
ନ ଶୁଣିଲେ ନୃପ କାହା ନ କଲେ ବିଚାର;
ତୁଳାପଟକୁ ବସିଗଲେ ସ୍ୱମାଂସ ସହିତ,
କ୍ଷୁଧାର୍ତ୍ତ ସଞ୍ଚାଣ ଦେଖି ଅତି ଆଚମ୍ବିତ ।
ଉଶୀନରେ କରିବାକୁ ପ୍ରତ୍ୟକ୍ଷ ପରୀକ୍ଷା,
ଇନ୍ଦ୍ର, ଅଗ୍ନି ବହିଥିଲେ ଏହି କୂଟ ଦୀକ୍ଷା ।
ସେ ପରୀକ୍ଷା ଶେଷେ ଇନ୍ଦ୍ର ହେଲେ ଆବିର୍ଭୂତ,
ଲଭିଲେ ଅଜସ୍ର ଠିକେ ଯଦୁକୁଳ ସୁତ ।
ରାଜସଭା ଶିରେ ଇନ୍ଦ୍ର କରି ପୁଷ୍ପବୃଷ୍ଟି,
କହିଲେ, "ରାଜନ, ଆଜ ଧନ୍ୟ ହେଲା ସୃଷ୍ଟି ।
ଥିବେ ଏତେ ଦୟା ଆହା ବହୁଛ ହୃଦୟେ !
ପରପ୍ରାଣ ରଖୁଅଛ ନିଜ ଜୀବନମୂଲ୍ୟେ ।"



# କାଣିଆ କପିଳା ଭେଟ

ସୂର୍ଯ୍ୟ ବଂଶେ ତାର          ଜନ୍ମ ସିନା ନାମେ
ବଂଶ-ଗାରିମା ସେ ରଖିଲ ନାହିଁ ?
ଦରିଦ୍ର ପୁଅ ତ          ଅଟଇ କପିଳା
ପର ଗୃହେ ଭୃତ୍ୟ ହୋଇଛି ଯାଇ ।
ଗୋଗୋଷ୍ଠ ଚରାଇ          ବଣ ନିତି ପ୍ରାତେ,
ସନ୍ଧ୍ୟାଗମେ ପୁଣି ଫେରଇ ବାସେ;
କେତେ ଦୁଃଖ ପାଏ,          ମନୁଷ୍ୟ ଜନମେ
ସତେ ସେ ଅତଳ ସାଗରେ ଭାସେ ।
ଏକମାତ୍ର ଅଛି          ମୂନିବ ତନୟ
କାଣିଆ ସମାନ ବୟସ ତାର ;
ଗୋଗୋଷ୍ଠ ସେନ ତା          ବୁଲନ୍ତି କପିଳା,
ଘରେ ରହିବାକୁ ମଣଇ ଭାର ।
କାଣିଆ କପିଳା          ଛଳ ଛଦା ବନେ
ଗୋଗୋଷ୍ଠ ଚରାଇ ବୁଲନ୍ତି ଦୁହେଁ,
ଥୁରୁଥୁରୁ ଦେହେ          ପୁଷ ମାଘ ଶୀତେ
ଜ୍ୟେଷ୍ଠ ଖରା ତାପେ ଶୁଖିଲ ମୁହେଁ ।
ବନ ବୁଦା କୋଳ          ଚୋଳ ଏକୁ ଆନ
ଖୁଆଖୋଇ ମୁଖେ ଦୁଅନ୍ତି ବେନ;
ଡାଳସ୍ପୃଶା ଖେଳେ          କାଟନ୍ତି ଦିବସ,
ଏକ ଆନ ଦୁଃଖ ହରନ୍ତି ସେନ ।

ଦିନେ ଖରାବେଳେ ଶ୍ରାନ୍ତ କପିଳା
ନିଦେ ଶୋଇଗଲା ପଡ଼ିଆ ଘାସେ;
କାଶିଆ ଜଗିଛି ଚୋରଚୋରଙ୍କୁ ଏକାକୀ
ସାଥୀ ତା ନିଶ୍ଚିନ୍ତେ ନିଦ୍ରିତ ପାଶେ ।
ସଘନେ ମାରଇ ଘୁଙ୍ଗୁଡ଼ି କପିଳା,
କାଶିଆ ଶ୍ରବଣେ ପଶଇ ଧ୍ୱନି;
କି ଭାବିଲା, ବୁଲି ଚାହିଁଲା କାଶିଆ,
ଦେଖି ପାଟି ମାରିଗଲା ତା ଖନ ।
ସାଥୀର ତା ପ୍ରାଣ ଚାଲିଯିବ ସତେ,
ଜଳଜଳ କରିଥିବ ସେ ଚାହିଁ;
ଉଠେ ପାଟି ଫେରି ଡାକ ବା ଦିଅନ୍ତା,
ତେବେ, କଣ ତଳେ ମିଳିବ ଶାନ୍ତି ?
ପାଞ୍ଚ ହାତ ଲମ୍ବ କୋଳଥିଆ ନାଗ
ମୁଣ୍ଡପାଖେ ଅଛି ବିସ୍ତାରି ଫଣା;
ବୁଦ୍ଧି ତା ନ ସ୍ଫୁରେ, ନ ଦିଶଇ ବାଟ,
ଆଖି ଥାଇ ହୋଇଯାଏ ସେ କଣା ।
'ଜଗନ୍ନାଥେ, ରଖ,' ରଟଇ ସେ ମୁଖେ;
ସାହା ଜଗନ୍ନାଥେ ହୋଇଲେ ସତେ,
ଫଣା ନୋଇଁ ନାଗ ହୋଇଲା ଅନ୍ତର,
ତଥାପି କାଶିଆ ନ ଯାଏ ପ୍ରତେ ।
କେତେବେଳେ କାଶୀ ଉଠିଲା ଘମୋନ୍ତ;
ଲୁହଆ ତ ତାର ଯାଇଛି ଶୁଖି,
କପିଳାକୁ ନହୁଁ ଉଠାଇ କହିଲା,
ଗୋଟିକ ଗୋଟି ସେ ଘଟଣାବଳି ।

କହୁ ସାରି ଶେଷେ ହସି ଯୋଡ଼ିଲା ସେ,
"ତୁ ତ, ଭାଇ, ନିଶ୍ଚେ ହୋଇବୁ ରଜା;
ମୋତେ ଯେବେ ମନ୍ତ୍ରୀ ପଦେ ନ ରଖିବୁ,
ନ ପାଇବୁ ରାଜଗାଦିର ମଜା ।"
ଶୁଣି ଉଚ୍ଛୁଳିଲା କପିଳା ତକ୍ଷଣେ
ସତେ ରଜା ସେହୁ ହୋଇଲା ପରି,
"ଏ କି ସୁନ୍ଦର କଥା ! ଜାଣିରଖ, ତୋତେ
ଆଜି ମନ୍ତ୍ରୀ ପଦେ ନେଲି ମୁଁ ବରି ।"
ସେଦିନ ସାୟାହ୍ନେ ନିତି ଦିନ ପ୍ରାୟେ
ଗୋଟଗୋଷ୍ଠ ଉଡ଼ାଇ ଫେରିଲେ ବାସେ
ରାଜା ମନ୍ତ୍ରୀ ବେନି; ଦିନ ବିତିଗଲା
ସପ୍ତାହରୁ ପକ୍ଷ, ପକ୍ଷରୁ ମାସେ ।
ଗଙ୍ଗବଂଶ ନୃପ ଯାଉଥିଲେ ଦିନେ
ପ୍ରଭୁ ଜଗନ୍ନାଥ ଦର୍ଶନ ଲାଗି;
ଅପୁତ୍ରିକ ସେ ତ କୁଳରକ୍ଷାପାଇଁ
ପ୍ରଣମିଲେ ପୁତ୍ରସନ୍ତାନ ମାଗି ।
ହଠାତେ ଦେଖିଲେ, ହସହସ ମୁଖେ
ପାଶେ ଉଭା ଚହ୍ନିଁ ବାଳକ କାହ୍ନୁଁ;
ଚିତ୍ତେ ବିଚାରିଲେ, "ଗୁହାରି ଯେବେ ମୋ
ପ୍ରଭୁ ସତେ ଦେଲେ ଏ ମହାବାହୁ ।"
ପୁଚ୍ଛିଲେ ନାମ ତା କୁଳ ଗୋତ୍ର ଆଦି
ନିଃଶଙ୍କେ କପିଳା କହିଲା ସବୁ;
ନିଜ ପାଶେ ତାକୁ ରାଜଯାନେ ଘେନି
ଫେରିଲେ ନଗରେ ଉଜ୍ଜ୍ୱଳପ୍ରଭୁ ।

କାଶିଆ ଭବିଷ୍ୟ ବାଣୀ ହେଲା ସତ
କପିଳା ଉତ୍କଳେ ହୋଇଲା ରଜା;
କପିଳେନ୍ଦ୍ର ଦେବ ନାମ ପ୍ରକଟିଲା,
ପ୍ରସନ୍ନ ହୋଇଲେ ଚାଇକ ପ୍ରଜା ।
ଏଣେ ଏତେ ଦିନ ସାଥୀର ବଚନେ
କାଶିଆର ନାହିଁ ବୁଝିଲ ପେଟ;
କେତେ ତ ଭଜନ୍ତି, ନୈରାଶ୍ୟେ କହିଲା,
ଆଉ କି କାଶିଆ କପିଳା ଭେଟ ?"
ତଥାପି ସେ ରାଜ- ସଭାମଧ୍ୟେ ଯାଇ
କି ସାହସେ ଉଭା ହୋଇଲା କ୍ଷଣେ;
ଦେଖି କପିଳେନ୍ଦ୍ର ଚାହିଁଲେ ଭୃତ୍ୟେ;
ପୂର୍ବ କଥାପାକ ପଡ଼ିଲା ମନେ ।
ମନ୍ତ୍ରୀପଦେ କାଶୀ ବସିଲା ସେଦିନ;
ବନ୍ଧା ହେଲା ବଡ଼ ଦେଉଳେ ନେତ,
ତଥାପି କଥାରେ କହୁଛନ୍ତି ଲୋକେ,
"ଆଉ କି କାଶିଆ କପିଳା ଭେଟ ?"

# ଆହା ମୋର ଗଣ୍ଠି ଧନ !

ଯାଇଅଛୁ ସ୍ଥୂଳ ତେଜି ଏ ମର୍ତ୍ତ୍ୟ କାଶିଆ,
ସ୍ୱର୍ଗେ ତ ନ ଥିବ ଯାଇ ଦରିଦ୍ର ମୁଲିଆ ।
ମୁଣ୍ଡ ଝାଳ ଭୂଣ୍ଡେ ମାରି ଖଟି ନିତି ସେହୁ,
ଯେଲାଗି ଆତ୍ମା ତା ଥିଲା ନ ପଳାଇ ଦେହୁଁ ।
ରୋଗେ ପଡ଼ି ନ କାଟିଲା ଗୋଡ଼ କେତେ ଦିନ,
ପଥ୍ୟ ବିନା କାୟା ତାର କ୍ରମେ ହେଲା କ୍ଷୀଣ ।
ଘରୁ ବାହାରିବ କେମନ୍ତେ ତା ଖରପା-ପିଲା,
ଭଲ ଘର ବୋହୂ ଯଶ ହେଲେହେଁ ନଥିଲା ।
ବିଶ୍ୱେଶ୍ୱ, ତରଭେ ଯେଣୁ ଧରିଛୁ ସନ୍ତାନ,
ତା ନିଜ ଶବ ତ ତାକୁ ହେଉଅଛି ଟାଣ ।
ନିଶା ଗର୍ଭୁଁ କନ୍ଦି ଶିଶୁ କାନ୍ଦେ କୁଆଁ କୁଆଁ;
କାଶିଆ ଶ୍ରବଣେ ଗୀତି ସୃଷ୍ଟି କରେ ନୂଆ ।
ହରଷେ ଖେଳିଲା କ୍ଷଣେ ହସ ତା ଲପନେ,
ଶୋଇବାର ଆଗୁଁ ସେହୁ ଅନନ୍ତ ଶୟନେ ।
ମର୍ତ୍ତ୍ୟ ଲୀଳା ସରିଗଲା ସେ ମୁହୂର୍ତ୍ତେ ତାର,
ନିଶା ମୁଣ୍ଡେ ପଡ଼ିଲା କି ବିଧାତା ପ୍ରହାର !
ଅଜ୍ଞାନ ଶିଶୁରେ ଚୁମ୍ବି କହିଲା ସେ କାନ୍ଦ,
"ଧନ ତୁ, ରଖିଲୁ ମୋତେ ଏ ମରତେ ବାନ୍ଧ ।
ନୋହିଲେ ମୁଁ ଆଶ୍ରିଆନ୍ତି ତତା ପତିପଦ,
ନ ଧରି ମୁହୂର୍ତ୍ତେ ଆଜି ଏ ଜୀବ ଦୁର୍ବହ ।"

ଲୁଟିଗଲା କାଶିଆର ସର୍ବ ଶତାନଳେ,
ଅପତ୍ୟ ଲାଳନେ ନିଶା ବ୍ୟସ୍ତ ମସ୍ତିତଳେ ।
ପର ଦ୍ୱାରେ ଖଟି ଧନ ଅର୍ଜେ ଯା ଅଳସ,
ଭର୍ତ୍ତି ତା ଆଦରେ ଭୋଜ୍ୟ, ଦଉଚେ ତଳପ ।
ଧନ୍ୟ ସେ ଫୁଟିଛି ମର୍ତ୍ତ୍ୟେ ବିବାହ-ସୁମନ,
ସନ୍ତାନ ତା ପୁଣ୍ୟଫଳ ଲଭଇ ଭୁବନ ।
ତା ଯୋଗେ ସମ୍ଭବେ ଭବେ ଯୁଗ ପରମ୍ପରା,
ନ ପାରେ ପରଶି ବଂଶେ କ୍ରୂର ମୃତ୍ୟୁ ଜରା ।
ଶିଶୁରୁ ମାନବ ଗଢ଼ି ପାଳେ ସ୍ନେହେ ପ୍ରାଣୀ;
ନ ବୁଝିପାରଇ ମୂର୍ଖ, ବୁଝୁଥିବେ ଜ୍ଞାନୀ ।
ଖଟି ଧନେ ଧନସାରୀ ଫେରେ ନିଶା ଭରେ,
କୋଳର ଶିଶୁ ତା ଭୋକେ କାନ୍ଦୁଥିବ ଘରେ ।
ସେ ଗଲେ ତ ମୁଖେ ତାର ବସି ଦେବ ସ୍ତନ,
ଶୁଖିଲା ଅଧରେ ଥରେ ଚୁମ୍ବିବ ବଦନ ।
ବାଟେ ଯାଉଥିଲା ଗର୍ବେ କା ମୋଟର ଗାଡ଼ି,
ବେଗ କି କମେ ତା ? ଗଲା ନିଶା-ଅଙ୍ଗେ ମାଡ଼ି ।
'ଆହା ମୋର ଗଣ୍ଡୁଧନ !' ସ୍ବର ପଦ କଥା,
କହୁଛି ସେ, ଯୋଡ଼ିଗଲା ତାର ନିରବତା ।
ଶବ ତା ଉଠାଇ ନେଲେ ପୁର ମେଡ଼ିକଲରେ,
କେ ଜାଣେ, ଶିଶୁଟି କସ କରଥିବ ଘରେ !

---

# ପଦରଜ ମାତ୍ର

ପୌଷ ଶୀତେ ଜଡ଼ୀଭୂତ ସରସୀ ତଡ଼ାଗେ
  ପଦ୍ମଲତା ହୋଇଅଛି ଜୃର,
ବନେ ଉପବନେ ଫୁଲ ସାରା ଧରାପୃଷ୍ଠେ
  ତରୁଡାଳେ ନାହିଁଣେ ପ୍ରଚୁର ।
ସେ ଲାଗି ଫୁଲର ମୂଲ୍ୟ ଲଭିଅଛି ବୃଦ୍ଧି,
  'ଫୁଲ ଫୁଲ' ଶୁଭେ ଶତ ମୁଖେ;
ସ୍ୱଳ୍ପ ଫୁଲେ ବହୁ ଅର୍ଥ ଅର୍ଜି ମାଳାକାରେ
  ଶୀତଋତୁ ଯାପୁଛନ୍ତି ସୁଖେ ।
କେ ଦୀନ ଶ୍ରମିକ ବାଡ଼ ବାପୀ ଅଳ୍ପ ଜଳେ
  ଅଯତ୍ନକେ ଫୁଟିଲା କମଳ;
ବହୁ ମୂଲ୍ୟେ ଏକ ତାକୁ କିଣିବ ସେ ଅନ୍ୟ,
  ହୃପ୍ରସନ୍ନ ଶ୍ରମିକ ଅନ୍ତର ।
ତୋଳି ପଦ୍ମକଳି ଗଲା ଶ୍ରମିକ ନଗରେ,
  କରେ ନେଇ ଧରିଛି ଯତନେ;
ଦେଖି କେ ବଣିକ ପୁଚ୍ଛେ, "ବିକବୁ ତ ଫୁଲ ?
  କେତେ ମୂଲ୍ୟ କହାଅ ବଦନେ ।

"ମାଣବସା ଗୁରୁବାର ଆଜ ତ ଜାଣିଛୁ
ଲକ୍ଷ୍ମୀପାଦେ ଚଢ଼ାଇବ ଫୁଲ;
"ପଦ୍ମାଳୟା ନାମ ହେବ ସାର୍ଥକ; ବଢ଼ାଅ,
ମନ ତୋଷି ଦେବି ମୁହିଁ ମୂଲ ।"
'ଦରିଦ୍ର ମୂଲିଆ ମୁହିଁ ମରେ ଅନ୍ନ ବିନା",
କ୍ଷୁବ୍ଧ ଚିତ୍ତେ ଉତ୍ତରେ ଶ୍ରମିକ;
"ଟଙ୍କାଟିଏ ପାଇଗଲେ, ବଢ଼ାଇବି ଫୁଲ,
ପେଟ ବୁଝି ଦିଅ ମୂଲଟିକ ।"
ଟଙ୍କା ଆଣି ଦେବାପାଇଁ ଧରିଛନ୍ତି ବଣିକ,
ଶ୍ରମିକ ତା ପତାଉଛି ହାତ;
ଗଳି ବାଙ୍କୁ ବାହାରିଲା ମହା ଶୋଭାଯାତ୍ରା,
ଲୋକାରଣ୍ୟ ପୂରିଅଛି ବାଟ ।
ନୃମଣି ପ୍ରତାପରୁଦ୍ର ଚାଲିଛନ୍ତି ପାଦେ
ଶ୍ରୀଚୈତନ୍ୟଦେବେ ଭେଟିବାକୁ;
କୀର୍ତ୍ତନେ ମୃଦଙ୍ଗ ବାଦ୍ୟ କମ୍ପେ ନୀଳାଚଳ,
କାହା କଥା ନଶୁଭେ କାହାକୁ ।
ଫୁଲ କିଣାବିକା ଗଲା ଥକି ସେହି କାରଣେ;
ନରମଣି ଉପଗତ ପାଶେ,
ଅକାଳ କମଳ ଦେଖି, ତୋଷେ ପଚାରିଲେ;
"ଆଣିଛ କି ବିକିବା ସକାଶେ ?
ଉତ୍ତରେ ଶ୍ରମିକ କହେ,"ଏହି ମହାଜନ
ଟଙ୍କାଟିଏ କରିଛନ୍ତି ମୂଲ"
ଭଣନ୍ତି ନୃପତି, "ଏକ ସୁବର୍ଣ୍ଣ ମୋହର
ଦେଇ, ମୁହିଁ ନେବି ଏହି ଫୁଲ ।

"ମହାପ୍ରଭୁ ଚୈତନ୍ୟ ଯେ ହୋଇଛନ୍ତି ବଜେ,
ତାଙ୍କ ଯୋଗ୍ୟ ସୁମନ ଏ ଦିନା,
ଦେଖି ଏହା ପଥେ, ତାଙ୍କ ଶ୍ରୀଚରଣତଳେ
କେମନ୍ତେ ମୁଁ ଦିବ ଫୁଲ ଦାନା ?"
ବଣିକ ବଚ୍ଚରେ, ପଦ୍ମ ଥୁଣ୍ଡଦେଲେ ହାତୁଁ,
ପଦ୍ମାଳୟା ହୋଇବେ ସମ୍ମୁଖ;
ଭଣ୍ଡାରୁ ତା ଧନରତ୍ନ ଦିବ ତ ଉଷାଇ,
ଦେଇ ତାଙ୍କୁ ଦରିଦ୍ରତା ଦୁଃଖ ।
ଯାଚଇ ତହୁଁ ସେ ଭବ ଦୁଇ ସ୍ୱର୍ଣ୍ଣ ମୁଦ୍ରା,
ଶ୍ରମିକ ତା ବଢ଼ାଇଲା କର;
ପଞ୍ଚ ସ୍ୱର୍ଣ୍ଣ ମୁଦ୍ରା ନୃପ କାଢ଼ିଲେ ଭୁଇରେ,
ଆଚମ୍ବିତ ଶ୍ରମିକ ଅନ୍ତର ।
କହିଲା ସେ, "ହେ ମଣିମା, ଗୁହାଇ ମୁଁ ମାଳୀ,
ଫୁଲ ବିକା କୁହେଁ ମୋ ବ୍ୟବସା;
ଦେଖନ୍ତୁ ଅମୂଲ୍ୟ ମୋର ଏ ପଦ୍ମ ଫୁଲଟି,
ପାଇବ କି ଏକ ମୁଁ ପ୍ରଶଂସା ?"
ଶୁନା ପଦ୍ମେ ପଦ୍ମାଳୟା ଅର୍ଚ୍ଚିଲା ବଣିକ,
ନରମଣି ଗଲେ ଖାଲି ହାତେ,
ଗମିଲା ସେ ସୁପ୍ରସନ୍ନ ଦରିଦ୍ର ଶ୍ରମିକ
ରାଜଥାଟ ପଛେ ଶୁଲ ବାଟେ ।
ମନେ ଭାବେ, "ଏ ସନ୍ନ୍ୟାସୀ ଲକ୍ଷ୍ମୀଠାରୁ ବଡ଼;
ଲକ୍ଷ୍ମୀଛଡ଼ା ହୋଇଛନ୍ତି ମୁହିଁ,
ଦେଖିବ ଭାଗ୍ୟେ କି ଫଳେ, ଦେଲେ ପଦ୍ମ ଭେଟି
ସନ୍ନ୍ୟାସୀଙ୍କ ଶ୍ରୀପଦ୍ମର ଛୁଇଁ ।"

ଶତ ନତ ଭକ୍ତ ମେଳେ ଆସୀନ ଚୈତନ୍ୟ
ଭକ୍ତିମାର୍ଗ କରନ୍ତି ପ୍ରଚାର;
ବସ୍ତ୍ରେ କେ ଲୋଟେ ତଳେ, କେ କରେ କୀର୍ତ୍ତନ,
କାହା ନେତ୍ରୁ ଝରେ ଅଶ୍ରୁଧାର ।
ଦରିଦ୍ର ଶ୍ରମିକ ଦେଖି କି ଅବା ବୁଝିଲା,
ହୋଇଗଲା ପ୍ରେମ ଅଭିଭୂତ;
ରକ୍ତ ମାଂସ ଘଟେ ତାର ସେ ଦିବ୍ୟ ମୁହୂର୍ତ୍ତେ
ସ୍ୱାନ୍ତର ଖେଳିଗଲା ଦ୍ୟୁତି ।
ଉତ୍କଳ-ନୃମଣି ପାଶେ ବସିଛନ୍ତି ଯାଇ;
ମଣି ନିଜେ କୃତାର୍ଥ ଦର୍ଶନେ;
ଜନତା-ଗହଳ ଭେଦି ଆସିଲା ଶ୍ରମିକ
ପଡ଼ୁ ଗୋଟି ପ୍ରଭୁଙ୍କ ଚରଣେ ।
ସ୍ନେହେ ପ୍ରଭୁ ଶ୍ରୀଚୈତନ୍ୟ ପୁଚ୍ଛିଲେ ଝଟତି,
"କହ, ଭାଇ, କି ଲୋଡ଼ା ତୁମର ?"
"ପଦରଜ ମାତ୍ର ମୁହିଁ ମାଗୁଛି ସମ୍ପଦ,"
ଅବଶେଷେ ଶୁଣିଲେ ଉତ୍ତର ।



# ସାନ୍ଧ୍ୟତାରା

ପ୍ରତୀଚୀ ଭୂଧର କୋଳେ ଲୁଚିଲେ ତପନ,
ସୁନ୍ଦର ପାଟଳେ ଶୋଭେ ବାରୁଣୀ ଗଗନ;
ଶୋଭେ ତା ଶାନ୍ତ କପୋଳେ,
ତୁମ୍ଭ, ସାନ୍ଧ୍ୟତାରା, ଏକା ତାରକା ସଭାରେ ।

ରବି ବୁଡ଼ିଗଲେ, ମର୍ତ୍ତ୍ୟ, ଘୋଟଇ ଅନ୍ଧାର;
ଦୁଃଖୀଙ୍କ ତୁ ତାଙ୍କ ଜ୍ୟୋତି ଦୁଃଖ ଦୈନ୍ୟ ହାର;
ତୁମ୍ଭ ଅନ୍ତିମ ଭରସା,
ତୋ ବିନା ଏ ବିଶ୍ୱସାର ଲଭନ୍ତା କି ଦଶା ?

ଦୀପାନ୍ୱିତ ନୁହେଁ ଖାଲି ଆକାଶ ତଳପ,
ନିରାଶ ହୃଦୟେ ଆଶା ଜଗାଉ କଳପ,
ସ୍ୱଚ୍ଛ ନିଶାଦେବୀ ଭାଲେ,
ସୀମନ୍ତିନୀ ଶୁଭ୍ର ଟୀକା ପରି କି ସମ୍ଭାରେ !

ପ୍ରକୃତି ଉଦ୍ୟାନେ ତୁ କି କମଳ କଳିକା ?
ଅବା କେଉଁ ଦେବତାର ନୟନ ଚନ୍ଦ୍ରିକା ?
କେଉଁ ସୁରନାରୀ ମଣି ?
ଅବା କାହା ନେତ୍ର ତ୍ୟକ୍ତ ଅଶ୍ରୁ ବାରି କଣୀ ?

ଅବା ଦବା ଗନ୍ଧି ଶୁନ୍ଧ ଶଭ୍ର ବେଣୀ ପାଶେ,
ତୁ ଏକ ନିଦ୍ଦବ ଦୀପ  ଜଳୁଛୁ ଆକାଶେ ?
କିବା ସୁରାସୁରଗଣ
ସମୁଦ୍ର ମନ୍ଥନୁ ତୋତେ ପାଇଛନ୍ତି ଧନ ?

ଯାହା ତୁ ହେଉ,ରେ ସାନ୍ଧ୍ୟତାରା, ଯାହାପ୍ରଭ,
ତୁ ତ ମୋର ଏକମାତ୍ର ପରାଣ ସମ୍ପତ୍ତି;
ମୋର ମରୁଷ ଜୀବନେ
ତୁ ଏକା ସଞ୍ଜାରୁ ରସ କଣିକା ବିଜନେ ।

ଜୀବନୁ ଲଭିବ ଯେବେ ମୋ ସୁଖ ଆଲୋକ,
ବ୍ୟଥିତେ ସ୍ୱର୍ଗ୍ଗର ଶୂନ୍ୟେ ବକ୍ଷ ହୃଦେ ଶୋକ
ତେବେ ଆୟୁ ଶେଷ କ୍ଷଣେ
ତୁମ୍ଭ, ସାନ୍ଧ୍ୟତାରା, ଓଇଁ ମ୍ଳାନବୁ କରଣେ ।



# 'ସେଦିନ ଏ ପଥିକ'

ଅର୍ଦ୍ଧ ନିଶୀଥିନୀ
ନିଶା ଗଗନର
ନାହିଁ କାହିଁ ସ୍ୱର ଶବଦ,
ଶୀତଳ ପବନ
ବହଇ ହିଲ୍ଲୋଳେ
ନିଖିଳ ଜଗତ ସ୍ତବଧ ।
ପୁରବାସୀ କାହ୍ନା
ସନ୍ତ୍ରଧେ ନ ଦିଶେ
ଦୀପାଲୋକ ରେଖା ମୃଦୁଳ,
ପ୍ରତିବାସେ ରୁଦ୍ଧ
କବାଟ ନିବଦ୍ଧେ
ଶୂନ୍ୟ ପଥ ଜନ-ବହୁଳ ।
ସମାଧି ମଗନ
ମୁନି ସମ ସତେ
ଆସୀନ ବିପୁଳ ନଗରୀ,
ଘନୀଭୂତ ଘୋର
ଅନ୍ଧକାରେ ଢଙ୍କେ
ରୂପ ଯେନ ଅମା ଶର୍ବରୀ ।
ଶିଶିର ରଜନୀ
ମୃଦୁ ଅନୁମାନ
ପଡ଼େ ଟପ ଟପ କାକର,
ଏ ଘୋର ନିଶୀଥେ
କିଏ ବା କାହିଁକି
କଷଣେ ଜାଳିବ ଜାଗର ?
ଚିର ବାସ ଖଣ୍ଡି
ନଅଣ୍ଟ ହୁଅଇ
ଅପଦନ ନାହିଁ ଘୋଡ଼ାଇ,
ଶୀତେ ଥରୁ ଥରୁ
କମ୍ପଇ ମାଧୁରୀ
ଚଳେ ଅନ୍ଧକାର ଏଡ଼ାଇ ।

ପ୍ରଭଦ୍ୱାରେ କ୍ଷଣେ
ଅଟକି ରହେ ସେ
ମୁଣ୍ଡ ଟେକି ଚାହେଁ ପ୍ରାସାଦେ,
ଯେ ସିନା ଜାଣଇ
ଦୀର୍ଘଶ୍ୱାସ ଫେଲଇ
କି ବଜ୍ରର ଚଳେ ବିଷାଦେ ।

ଶୀତ ସତେ ଅବା
ନାହିଁ ଯାଏ ଜଣା
ଚିତ୍ତେ ତା ରହିଛି ଦୃଢ଼ତା,
ସ୍ୱର୍ଗ ବସୁନ୍ଧରା
ମଣୁଛି ସମାନ,
ନିଜ ଲାଗି ନାହିଁ ମମତା ।

ଚାଲିଲା ମାଧିଆ
ଦୁଆରୁ ଦୁଆରେ
ଶେଷ ହେଲା ଆସି ନଗର,
କୁଟୀର-କବାଟ-
ସନ୍ଧରେ ଦିଶଇ
ଜଳିବାର ଦୀପ ଉଜ୍ଜଳ ।

ଫାଟ କବାଟେ ଧୀରେ
ନିରେଖିଲା ବାରେ
କିଏ କେ ପ୍ରଶାନ୍ତ ମୂରତି,
ନଡ଼ା ନାହିଁ ନେତେ
ଗଣ୍ଠିର ନଣୀଥେ
ଲେଖଣୀ ଚାଲନ୍ତି ଝଟତି ।

ପାଖରେ ଅବଳା
ଶୋଇ କେ ରହିଛି
ହାତେ ଝଟକଇ ବଳୟ
ସେ କୁଟୀ ସୁଷମା
ସେହି ସତେ ଅବା
ଶୋଭିତ ତା' ଲାଗି ବଳୟ ।

ହାତ ଚଳାଗଲେ
ଶୁଭେ ଟର ଟର
ହାତ ଥକେ ଯେବେ ସ୍ତବଧ,
ଜଗି ହୋଇ ତହିଁ
ରହିଲା ମାଧିଆ
ମୁଖୁଁ ନ ଫିଟଇ ଶବଦ ।

କୁଟୀର ଦୁଆର ଖଡ଼ ଖଡ଼ ଶୁଣି
ଉଠିଲେ ପ୍ରଶାନ୍ତ ମୂରତି,
'କିଏ ତୁମେ ବୁଦ୍ଧ, ଏ ଶୀତ ନିଶୀଥେ',
ପୁଚ୍ଛା କଲେ ଫେଇ ତଡ଼ିତ।

ମୁଖୁଁ ମାଧୁଅଁାର ନ ଫୁଟେ ବଚନ
ନୟନେ ଆକୁଳ ଗୁହାଣୀ,
ଯୁବା ହୃଦେ ଦୟା— ଉଦଧି ଉଚ୍ଛୁଳେ
ଆନ୍ଦୋଳିତ ଦେଖି ତା' ଠାଣି।

କୁଟୀରେ ଚଳିଲ ମାତ୍ର ସେ ଇଙ୍ଗିତ
ନ ବସିଲ କୁଶ-ଆସନେ,
ଭାଷିଲା ଦଇନେ— "ମୁଁ ଅଛୁଆଁ ଜନ
ବସିବି କୁହଁ ବା କେସନେ ?

ଶୁନ ଓଳ ଦେଲ ପୁଅ, ଝିଅ, ଭାର୍ଯ୍ୟା
ରଖିଛୁ ସକଳ ଉପାସେ,
ଜର ଯୋଗୁ କାମେ ଯାଇନି ଖଟି ତ,
ଖୁଦ କଣି ନାହିଁ ଆବାସେ।"

କି ଭାବିଲେ ଯୁବା ଚାହିଁ ଏଣେ ତେଣେ
ତେଜିଲେ ନିବଡ଼େ ନିଶ୍ୱାସ,
ନ ବଶିଲ ବୁଦ୍ଧି ଦୟା ନିରବଧି
କି ଦେବେ ସେ ଜନେ ଆଶ୍ୱାସ

ବାଣୀ ସୁଭାଷିତ ଲଭିଛନ୍ତି ଯିନା
ରମା ଯିନା ନିଜ ଘରଣୀ,
ନିଜେ ତ ଦରିଦ୍ର ଧନ ଜନ କରେ
ଭକ୍ତଦେବେ କିସ ସେ ଗଣି ?

ଆଖି ପିଚୁଳାକେ — ନୟନେ ଧାଇଁଲା
ସୀମନ୍ତିନୀ ହେମ କଙ୍କଣ,
ଧୀରେ କାଢ଼ି କରେ — ଦେଲେ, ମାଧିଆରେ
ଦେହେ ଖେଳିଗଲା କମ୍ପନ ।
ରମଣୀ ରତନ — ନିଦ୍ରା ଗଲା ଭାଜି
ନ ରହିଲେ କ୍ଷଣେ ଅଳସ,
ଆନ ପଟ୍ଟ କାଚ — କାଢ଼ି ନିଜ ହାତୁ
ମାଧିଆରେ ଦେଲେ ରଭସ ।
ଭାଷିଲେ କୋମଳେ — "କି ସ୍ୱପନ କାଳେ,
ଅବା ହତଶିଶ୍ରି କଳ୍ପନା
ଅନୁମାନ ପଡ — ପଟେ ମାଗ ଦେଲେ
'ଯେନ ଏ ପଟ୍ଟକ' ପ୍ରାର୍ଥନା ।
ମହାକବି-'ସ୍ୱପ୍ନ' — ନାଟକ ଲେଖକ
ଧ୍ୟାନ ଯେନ କରେ ସତ୍ୱର,
ରମା ପଦେ ବନ୍ଧୁ — ବିନମ୍ରେ ପ୍ରଣତି
ଚଳିଲା ମାଧିଆ ମୁକୁର ।
ନିବିଡ଼ ନିଶୀଥେ — ଲୁଚିଗଲା କାନ୍ଦି
ମାଧିଆ ଅଲୁଅଁ ଜାଡରେ,
ନ ଲୁଚିଲା କଥା — ଦେଶ ଗାଏ ଗାଥା
ସତ୍ୟ ଶୋଭେ ଦକ୍ଷା ଘଡରେ

ପଣ୍ଡିତ ରଘୁନାଥ ମିଶ୍ର

# ଧନର ଗତି

ଚତୁର୍ବେଦଧର ଆଚାର୍ଯ୍ୟ ସାୟଣ
ବିଜ୍ଞାନୀ ପଣ୍ଡିତ ବର
ଜ୍ଞାନ ଦୀପ ଜାଳି କରିଲେ ଉଜ୍ଜ୍ୱଳ
ଅନ୍ଧକାରମୟ ଧରା ।
ଅରଜିଲେ ବିଶ୍ୱେ ବିଶାଳ ପୌରୁଷ
ଲଭିଲେ ସାଧନା ସିଦ୍ଧି,
ଲେଖିଲେ ଆଚାର୍ଯ୍ୟ କଳା କଉତୁକେ
'ସୁଭାଷିତ ସୁଧାନିଧି' ।
ସଂସ୍କୃତ ସାହିତ୍ୟ ଅମୂଲ୍ୟ ମଣି ସେ
ଧନ୍ୟ କୃତିପଦ ତାର,
ଦେବୀ ବୀଣାପାଣି ବିପୁଳ ପୂଜାର
ସେ ଏକ ମହା ସମ୍ଭାର ।
ଲେଖିଛନ୍ତି ତହିଁ ଦି ଧାଡ଼ି ସାୟଣ
ଧନୀ ଧନ ବିଷ କରି,
ମୋ ଭଳି ଦରିଦ୍ର ଧନ ହୀନ କିରେ
ଅଜାଡ଼ି ନଖିଲ ଶିଶ ।

---

'ତ୍ୟାଗଂ ଭୋଗଂ ଚ ବିନା ସତ୍ତ୍ୱମାତ୍ରେଣ ଯଦି ଧନିନଃ,
ତଦ୍ବୟମପି କିମପି ନ ଧନିନଃ ? ତିଷ୍ଠତି ନଃ କାଞ୍ଚନୋ ମେରୁଃ ।'
'ସୁଭାଷିତ ସୁଧାନିଧି'—ସାୟଣାଚାର୍ଯ୍ୟ

ମୁଁ ହୀନ ଦୁର୍ଭଗା ହୀନ ହତଭାଗା
ଲାଞ୍ଛନା ଥାପି ଏ ଶିରେ,
କନକ ମେରୁ ମୋ ରହିଛି ମଣ୍ଡିବ
ଅଛି ରତ୍ନ ଧରା ତଳେ ।
ବସୁନ୍ଧରା ଯେତେ ଧରିଛି ବିଭବ
ସେ ନିଖିଳ ପିତା ମୋର,
ଟେକି ଦୁଇ ବାହୁ କେଶରୀ ବନ୍ଧମେ
କରିବ ଗର୍ଜନ ଘୋର ।
ତ୍ୟାଗ ଅବା ଭୋଗ ଦୁଇ ଗତି ପିତା
ଏ ଧନା ତୃଷ୍ଣାପ୍ତ ଗତି
ନାହିଁ ଧନ ଭାଗ୍ୟେ ପରଖି ସୁଜନେ
ଏତିକ ତାର ନିଷ୍ପତ୍ତି ।
ଅଛି ବୋଲି ଯାକେ ସଞ୍ଚିତ ସମ୍ପଦେ
ଯେତୁ କରେ ଧନ ମାନ,
ସେ କମା ଧନିକ ମୁଁ କମା ନିର୍ଦ୍ଧନ
ଅଛି ମୋ ମେରୁ କାଞ୍ଚନ ।
ତ୍ୟାଗ ଭୋଗ ଯେତୁ ନ କରେ ଧନରେ
ସତ୍ୟ ମାନେ ମଣେ ଧନୀ,
ଧିକ୍ ତାର ଜ୍ଞାନ ତା ମହତ ମାନ
ତାଙ୍କୁ କି ଧନକେ ଗଣି !
ହେମ ମହା ମେରୁ ରହିଛି ଉତ୍ତରେ
କୁବେର ଭଣ୍ଡାର ମୋର,
ଧର୍ମ ଗଙ୍ଗାଧର ଅଛି ଯେତେ ବଣ୍ଟେ
ତା ସଙ୍ଗେ ତୁଳନା କା'ର ?

ବୃଥା ଗର୍ବ ନାହିଁ    କର ଧନବନ୍ତ
ଫୁଲାଇ ନ ସ୍ଥୂଳ ଗାତ୍ର,
ମେରୁ ସହ ସମ    ହେବ କି ସୋରିଷ
ତୁଳନାରେ ଦେଲେ ଘାତ ।
ତ୍ୟାଗ ହେତୁରେ ଅବା    ସବୁ ଯାଇପାରେ
ଧର୍ମର ଅତୁଳ ଶିକ୍ଷା,
ହେମ ମେରୁ ସ୍ୱର୍ଣ୍ଣ    କେତେ ବା ସରିବ
ନେଲେ ଯୁଗ ଯୁଗ ଧରି !
ଠକ, ତେଜ ଧନ    ଭୋଗରେ ଲଗାଅ
ସମ୍ଭାଳ ନ ରଖ ତଳେ,
ଭଣନ୍ତି ପ୍ରବୀଣ    ଆଚାର୍ଯ୍ୟ ବ୍ରାହ୍ମଣ
ଜ୍ଞାନ ଲବ୍ଧ ବୁଦ୍ଧି ବଳେ,

ପଣ୍ଡିତ ରଘୁନାଥ ମିଶ୍ର



# ବଡ଼ ଠାକୁର

ସତ ତୁମେ ଜଗତ-ଠାକୁର ?
ମାଳଚକ୍ରେ ବାନା ଫର ଫର,
ଭକତେ ଅଭୟ ଦେଇ    ମେଲ ଚଉବାହା
ଜଗତର ଗତ ତୁମେ,    ଅନାଥର ନାଥ, ନିରାଶ୍ରୟ ସାହା,
ଫେରି ଚକାଡୋଳା,
ଦେଖ ଭକ୍ତ-ମେଳା,
ବୋଲାଅ ଜଗତେ ତୁମେ ବାଞ୍ଛା-କଳ୍ପବଟ
ଦେଖାନ ? ଭକତ    ହୃଏ କେତେ ଛଟପଟ ।

ଶବର ସେ କେବା ପୂଜା ଜାଣେ,
ଦେଖିଲା ସେ କେଣେ ପ୍ରତିଦିନେ
କି ଜାଣିଲା ଇନ୍ଦ୍ରଦ୍ୟୁମ୍ନ,    କି ଦେଖିଲା ବିପ୍ର ବିଦ୍ୟାପତି,
କି ଶୁଣିଲା ସେ ଗାଲମାଧବ    କି କହିଲା ଅବା ତାର ମତି
ହୃଦେ ନିତ୍ୟ ପ୍ରେମ
ଧାପି ଧରା କ୍ଷେମ
ତୋଳିଲା ଉତ୍ତୁଙ୍ଗେ ଚୂଡ଼ା ଭୀମ ନରପତି
ପ୍ରେମମୂର୍ତ୍ତି ଶତ୍ରେ ରୁଦ୍ଧ ରଚିଲା ଆରତି ।

ଜ୍ଞାନ ଦୀପ ମହିମା ଭାସ୍କର
ଜଗଦ୍‌ଗୁରୁ ବାଳକ ଶଙ୍କର
ବସି ତୁମ ପିଠେ, ଗରଜିଲା ବେଦାନ୍ତ ଭାରତୀ;
ବଖାଣିଲା ତତ୍ତ୍ୱ ରାମାନୁଜ; ମାଧ୍ୱ କଲା ପ୍ରସ୍ତର ପୀରତି;

ଖୋଲ କରତାଳେ,
ମହାମନ୍ତ୍ର ବୋଲେ
ନାଚିଲ ନିମାଇ ନିଜେ, ନଚାଇଲ ଜନେ,
ଯୁଗେ ଯୁଗେ କଳ୍ପତରୁ ଚିତ୍ତବାହା ତୁମେ ।

ଜଳ ଜଳ ନିରେଖେ ଶ୍ରୀପଦେ
ଛଳ ଛଳ କେବା ଅବସାଦେ
କଳ କଳ ଫୁଟେ କଣ୍ଠୁ କାର ସ୍ତୁତି ଗାନ
ରୁଦ୍ଧଶ୍ୱାସ କାର ଅବା, ଆନ୍ଦୋଳିତ କେହୁ, ମୁଖ କାର ମ୍ଳାନ
ଭାଷା ନାହିଁ ଫୁଟେ
ନିଶବଦେ ସ୍ତବ ଛୁଟେ
ପାଏ କି ପୁଲକ ଭକ୍ତ ଉଜ୍ଜ୍ୱଳ ନୟନ
'ସତ ତୁମେ' ? — ଚିତ୍ତେ କାର ଉଠେନି ପ୍ରଶନ ।

ଜାଳି ଦୀପ ଅନ୍ତରେ ବାହାରେ
ଖୋଜେ ନିତି ସତେ ମୁଁ କାହାରେ
ସେ କି ସତେ କଳ୍ପ ବଟ, କଳପ-ଲତିକା
କା' ପାଇଁ ଗୁନ୍ଥଇ ବସି ଏ ମନ ଯୂଥିକା
ବାଞ୍ଛା କଳ୍ପତରୁ
ମୋ କଳ୍ପନା ପୂରୁ
ଏ ଜୀବନେ ପୂର୍ଣ୍ଣ ହେଉ ଅନନ୍ତ ଆମୋଦ
ଅବସାଦ ଧୁଅଁୁ ଦେବ, ଜାଗୁ ହୃଦେ ବୋଧ ।

---